କେତେ ଭାଇ ପରା    କହୁଛନ୍ତି ମୋର
ପଛଆଡ଼େ ଦେଇ ଗାଳି,
ନିଜେ କଳଙ୍କିନୀ    ହୋଇ ଅଲକ୍ଷଣୀ
ଆମ ମୁଖେ ଦେଲୁ କାଳି ।

ଏହା ଲାଗି ଧାଡ଼େ    ଝିଅ ବୋହୂଙ୍କର
ଇଜତ ମହତ ଗଲା,
ଖୋଲାମୁହାଁ ଜବ-    ଶିଖାଣି କଥାରେ
(୧) ସଭିଙ୍କି ଉଚ୍ଛୁଳା କଲା ।

ଏହିପରି କେତେ    ଅପବାଦ କେତେ
ନିନ୍ଦା ବାଜୁଛି ମୋ କାନେ,
ନିଆଁ କୁଣ୍ଡେ ମତେ    ଠେଲି ଦେବେ ପରା
ଇଜତିଆ ଭାଇମାନେ ?

ଆହା ରେ ଇଜତ,    ସତୀ-ଗାଇଜା ତ'
ସରଗକୁ ଯାନ୍ତା ଉଠି;
ପୂରୁବର ସତୀ-    ଙ୍କର ଗାତିମାତି
(୨) ପାଉଲେ ସବୁ ପାଉଁଟି ।

କେତେ ଭାଗ୍ୟବତୀ    ସତୀ ଭଗବତୀ
(୩) ଭଗୀରଥଙ୍କ ଜନନୀ,
ଯା'ଙ୍କ ନାମ ସ୍ମରି    ବିଧବା ସୁନ୍ଦରୀ
ଲଭିବ କୁମରମଣି ।

ସତୀଶ୍ରେଣ୍ୟେ ଜନ୍ୟା-    କାହ୍ନୁଁ ଉଡ଼େ ବାନା
(୪) ଆଉ ଏକ ସତୀଙ୍କର,
ଯାହାଙ୍କ ପ୍ରେମରେ    ରସି ଶଲ୍ୟଙ୍କରେ
ବସିଥିଲେ ଶଙ୍କର ।

---

(୧) ଉଚ୍ଛୁଳା—(ଉଚ୍ଛୃଙ୍ଖଳା ଶବ୍ଦଜ) ସ୍ୱେଚ୍ଛାଚାରିଣୀ ।

(୨) ପାଉଁଟିବା—ପଡ଼ିତ ବସ୍ତୁକୁ ସଂଗ୍ରହ କରିବା ।

(୩) ଭଗୀରଥ—ସୂର୍ଯ୍ୟବଂଶୀୟ ନୃପଚକ୍ରେଶ୍ୱର, ଦିଲୀପଙ୍କ ପୁତ୍ର । ଏହି ବିବରଣ ବାଲ୍ମୀକି ରାମାୟଣ-ଆଦ୍ୟକାଣ୍ଡରେ ଅନୁସନ୍ଧେୟ ।

(୪) ଏହି ସତୀଙ୍କ ବୃତ୍ତାନ୍ତ ସାରଳା 'ମହାଭାରତ'ରେ ଦ୍ରଷ୍ଟବ୍ୟ ।

(୧) ଦେବ, ଦାନବ ବା'　　　　ସଙ୍ଗପ୍ରେମଲୋଭେ
ସତୀପତି-ଯତିବେଶେ,
ଅସତୀ ରାଜ୍ୟରେ　　　　ଘଟିବ କି ଏହା—
ଘଟେ ଯିନା ସତୀ ଦେଶେ !

ଗାଇ ବସିଲେ ଏ　　　　ସତୀଙ୍କ ଚରିତ
ହସିବେ ବିଦେଶୀ ଭାଇ,
ଦେଶ ଭାଇ ନିଜେ　　　　ନିଆଁ ଗାଲଟିଲେ
ପାରିବ କହିଁ ଲୁଚାଇ !

(୨) ପୂର୍ବର ସତୀଙ୍କ　　　　ଖ୍ୟାତି ମିଳିବ କି
(୩) ପୂର୍ବର ସୁକୃତି ବିନା ?
(୪) ପରେଚ୍ଛା ସତୀ ବା'　　　　ହୋଇ ନ ପାରିବି
'ପରସ୍ତୁ ସତୀ' ମୁଁ ଯିନା !

(୫) ଅକ୍ଷତା ବଇସେ　　　　ପୁଅ ଜନ୍ମ କରି
ଭୋଗିଥିଲି ହଟହଟା,
ତଥାପି ବାମ୍ଭଣୀ　　　　ପଦଟା ମୋହର
ହୋଇଛି କଳଙ୍କାଫଟା !

ପାପଗର୍ଭ ଦେଖି　　　　ମନେ ପଡ଼େ ଦପ
ଦେଇଥାନ୍ତେ ମାଆ ବାପ,
ଶିଶୁ ତିନି ମାତ　　　　ମୋ ସ୍ନେହରେ ପଡ଼ି
ବଢ଼ାଇଲେ ମୋର ପାପ ।

---

(୧) ଏହି ସତୀମାନଙ୍କ ବିଷୟ 'ରାମାୟଣ', 'ହରିବଂଶ' ଓ 'କାର୍ତ୍ତିକମାହାତ୍ମ୍ୟ' ଆଦି ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ହୋଇଅଛି ।

(୨) ପୂର୍ବର ସତୀ—ପୂର୍ବକାଳୀନ ପ୍ରାଚ୍ୟଦେଶୀୟ ସତୀ; ସୀତା, ଅହଲ୍ୟା, କୁନ୍ତୀ, ଦ୍ରୌପଦୀ, ବୃନ୍ଦାବତୀ (ଜଳନ୍ଧରଙ୍କ ପତ୍ନୀ) ପ୍ରଭୃତି ।

(୩) ପୂର୍ବର ସୁକୃତି—ପୂର୍ବଜନ୍ମର ପୁଣ୍ୟ ସାଧନା, ତପ ।

(୪) ପରେଚ୍ଛା ସତୀ—ପର ଇଚ୍ଛାରେ ଯେଉଁମାନେ ସତୀ, ପର୍ଦ୍ଦା ଅବରୁଦ୍ଧା ସ୍ତ୍ରୀ ।

(୫) ଅକ୍ଷତା ବଇସ—ଯେଉଁ ବୟସରେ ମାଧୁରୀ ଅଛି, ନବଯୌବନ; ଶାସ୍ତ୍ରଧାରରୁ ଟିଆଇ ନଥିବା ବୟସ, କିଶୋରୀ ବୟସ ।

ପାପଗର୍ଭ-ପ୍ରଭି . କାର ପାପ ପ୍ରଭି
ପ୍ରଶ୍ରୟ ଦେଉଛୁ ସିନା,
ବେଶ୍ୟା କେବେ ସତୀ ହୋଇଛି, ହେଲେହେଁ
ଜାରଜ-ସନ୍ତାନ-ହୀନା ?

ନାରୀ ସମାଜରେ ଜାରି କଲ, କରୁ
ଘୁଞ୍ଚିବ ଏ ଦୁରୁଦଶା,
(୧) ଦାସୀ-ପ୍ରିୟ-ଭାଇ ବାରି ପାରିବେକି
ହେଉଛି କେ ଲୋକହସା ?

ଯେବେ ମୁଁ ଅସତୀ ବିବାହିତ ପତି
ଦେଖାଇଥାନ୍ତା ମୋ ଦୋଷ,
ଦୋଷ ନ ଦେଖାଇ ଦୂଷିତା ବୋଲିବା
ନୁହେଁକି ନିନ୍ଦା ଆକ୍ରୋଶ ?

ଯେ ଦୋଷେ ଯୁବତୀ ହୁଏ ଛାଡ଼ପତ୍ନୀ
ଅବା ଦୂଷିତା ପତିତା,
ସେ ଦୋଷେ ବି' ବର- ଗୁଣ ତ' ମଧୂର
ବଧୂଗୁଣ କପାଁ ପିତା ?

ମଦୁଆ ବେଧୂଆ ଗ୍ଲେରି ଅଲସୁଆ
ହେଲେହେଁ ପତି 'ଈଶ୍ୱର'
ଏକଥା ଯେ କହେ କାହିଁକି ନ ଦହେ
ତା' ମୁହଁକୁ ବୈଶ୍ୱାନର ?

ବାପ ଆଣ୍ଠୁକୁଡ଼ା ଠଙ୍କା ଲୋଭେ ମୋହୋ
ପାଇଁ ବାଛିଲା ଯେ ପତି,
ଦରମରା ସେ' କି ସରମେ ଆଉ
ବର୍ଣ୍ଣିବ ତାର ଦୁର୍ଗତି ?

ଶଯ୍ୟାରେ ପଡ଼ି ମୁଁ ଲଜ୍ଜାରେ କାନ୍ଦିଲି
ଛନ୍ଦିହେଲା ମୋ ଚରଣ,

(୧) ଦାସୀ-ପ୍ରିୟଭାଇ—ବ୍ୟଭିଚାରିଣୀମାନଙ୍କର ପ୍ରିୟଭାଇ । ଦାସୀପ୍ରିୟ-ଭାଇ—(ବ୍ୟଙ୍ଗାର୍ଥରେ) ଯେଉଁ ଭାଇମାନେ ଦାସୀପ୍ରିୟ ଅର୍ଥାତ୍ ବେଶ୍ୟାସକ୍ତ ।

ଭାବିଲି ଏ ଦଶା ବରଣ କରିବା
ଭଗୀରଥସା ମରଣ ।

'ବର' ବୋଲି ନଜେ ବରି ତ' ନଥିଲି
ପର ଇଚ୍ଛାରେ ମୁଁ ବୁଢ଼ୀ,
ଗେଲି ଗରବ ମୋ ଭାଙ୍ଗିଗଲା, ପୁଣି
ଭାଙ୍ଗନ୍ତି କାହିଁକି ଚୁଡ଼ି ?

ବାପ ତ' ପୁରୁଷ ଜ୍ୱାଇଁ ଲାଗି ମାଆ
ପୋଛୁ ପୋଛୁ ଲୁହଧାର,
ଝିଅବିକା ଟଙ୍କା ସିନ୍ଦୁକେ କରନ୍ତି
ଲାଖ ଚୁଡ଼ି ଭାଙ୍ଗୁ ତାର ।

ମଣିଷ ଜନମ ପାଇ ହୋଇଗଲି
ଗାଈ ମଇଁଷୀର ତୁଲ୍ୟ,
ଯେତିକି ଟଙ୍କାରେ ବିକା ହୋଇଥିଲି
ସେତିକି କି ମୋର ମୂଲ୍ୟ ?

"ପ୍ରେମ-କଉତୁକେ ହେମ-ଯଉତୁକେ
ତୋଷିବ ରସିକ ବର"
ଭାଷିଲେ ହେଁ କେହି ଅଶୀ-ବରଷିଣୀ
ରସିବ କି କଣ୍ଟି-ବର ?

'ଘଇତାଖାଈ' ମୁଁ ହୁଏ ପଛେ, ଭାଗ୍ୟ
ନହେଲି ବ୍ରାହ୍ମଣ ଝିଅ,
ନୋହିଲେ ତ' ଲୋକେ ଜଳା ମରମେ ମୋ
ଢାଳି ଦେଇଥାନ୍ତେ ଘିଅ । *

---

* ଘଏ୍ତାଖାଇ ବଏ୍ଲେଁ ହେଲେଁ
କାଏଁ୍ କର୍ବେ ସହ୍ନେଲେଁ ?
ପଏ୍ତାପିନ୍ଧା-ଟି ନୁହେଁ ତ'
ରହିଁ ଗଲେଁ ଖଏ୍ଲ୍ କୁହିଁ ଯାଏ୍ତିଁ ।
ଶୁନ ଗୋ ମା' ବହ୍ନେ................ !

ବାଳବଧବାର ତପ୍ତ ଲୁହଧାର
ପଣନ୍ତ ତନ୍ଦ୍ରାଇଦେଏ,
ବପତ୍ନୀକ ବୃଦ୍ଧ ଭଡ଼େ ବାଳାହ୍ରଦ
ହସୁଛନ୍ତ ତା' ନାତଏ ।

ଲଜ ସରମରେ ମଥା ପୋତହୁଏ
ଶୁଣିଲେ ଏ ଖାତମାତ,
ଆଖିବୁଜା ମହା- ତ୍ମାମାଏ ତଥାପି
ବାଛନ୍ତ ମୋ' ଖୋଲ ପ୍ରୀତ । ✱

(୯) ହେଲେ ଡାଲଖାଇ ସାଉରାତ ମୁହିଁ
ନାଚେ ହୋଇ ଉଜାଗର,
ମୁହିଁ ନାଚଭଙ୍ଗୀ ଶାଢ଼ୀ, ଠଙ୍କା ପିଙ୍ଗି
ଦଅନ୍ତ କେତେ ନାଗର ।

---

✱ (୮) ବାଲୁଡ୍‌ରାଆଁଡ଼ୀ ପାପର୍ ଡରେଁ
ସତିଁ ଯାଉଥିବା ବାପର୍ ଘରେଁ,
ଝିଁଟି ଭଜାଲେଁ ଝିଇ୍‌କେ ପାପ୍
(୮) ବାପ୍ ଗୁଖୁଥିବା ନାର୍ଙ୍ଗି ଲେଢ ।
ଶୁନ ଗୋ ମା' ବହନେ............!

(୮) ବଧବା ଯୁବତୀ ଝିଅର ନର୍ଜଳା ଏକାଦଶୀ ବ୍ରତ ପାଳନ ଏବଂ ବପତ୍ନୀକ ବୃଦ୍ଧ ପିତାର ପୁନର୍ବିବାହ ବ୍ୟବସ୍ଥା ବଧାନ ହେଉଛ ଆର୍ଯ୍ୟ ବା ହନ୍ଦୁ ସମାଜର ନତାନ୍ତ ଘୃଣ୍ୟ କଳଙ୍କ ! ଏତଦ୍ଦ୍ୱାରା ପ୍ରବୃତ୍ତି (ଭୋଗ) ଓ ନବୃତ୍ତି (ତ୍ୟାଗ) ମାର୍ଗର ବଗ୍ଦରଧାରା ସମ୍ପୂର୍ଣ୍ଣ ବପରୀତ ହୋଇ ପଡ଼ୁଛ । ଏହ କୁସଂସ୍କାରଟି ସ୍ୱାର୍ଥାନ୍ଧ ମରହଟ୍ଟୀ ବ୍ରାହ୍ମଣ ସମାଜରେ ବଶେଷ ଭାବରେ ପରଲକ୍ଷିତ ହୁଏ । ତନ୍ନିମିତ୍ତ "ପଏ୍‌ଡାପିଛା ଝି ଲୁହେଁ ତ" ବୋଲ ବର୍ଣ୍ଣିତ ନାୟିକାର ମୁଖରେ ପକ୍ଷପାତୀ ବ୍ରାହ୍ମଣ ସମାଜ ପ୍ରତ ଆକ୍ଷେପ କରାଯାଇଅଛ ।

(୮) ନାର୍ଙ୍ଗି—ନାରଙ୍ଗୀଫଳ; (ଲକ୍ଷ୍ୟାର୍ଥରେ) ନବୀନା ନାଗରୀ । ଲେଢ—ପାଚଲ ଆମ୍ବ; (ଲକ୍ଷ୍ୟାର୍ଥରେ) ଲଳତ-ଯୌବନା କଶୋରୀ ।

(୯) ଡାଲଖାଇ—ସ୍ୱନାମପ୍ରସିଦ୍ଧ ଦେବୀବଶେଷ ଓ ଗଡ଼ଜାତ ଅଞ୍ଚଳର ପର୍ବ-ବଶେଷ । ଠିକ୍ ଦଶହରାରେ ଏହ ପର୍ବରେ ମଧ୍ୟ ଦୁର୍ଗାଦେବୀଙ୍କର ପୂଜା ହୁଏ । ଦୁର୍ଗା ଦେବୀଙ୍କର ଏହ ପୂଜାବ୍ରତ ବଶେଷତଃ ଅନାର୍ଯ୍ୟ ସମାଜର ଝିଅ ଭୂଆସୁଣୀମାନଙ୍କ ଦ୍ୱାରା ପାଳତ ହୋଇଥାଏ । ଏହ ସମୟରେ ସେମାନେ ଡାଲଖାଇ ଗୀତ ଗାଇ ଆନନ୍ଦରେ

ଓସା ବ୍ରତ ବେଳେ    ନାଚ ଝୋଙ୍କାମେଳେ
ନଟୀ ହୋଇଗଲି ଯେବେ,
କେ କହିବ କହ    କାହା ଝିଅ ବୋହୂ
ନାଚନାହିଁ କାହିଁ କେବେ ?

ନଟୀ ସେଇ ଯିନା    ନାଚେ ଯେ ନବୀନା
ନାଟକୁ କର ଜୀବକା,
ନଟୀଗଣୀ ସେ' ତ    ଯାର ନୃତ୍ୟ-ଗୀତ
ଟିକଟରେ ହୁଏ ବିକା ।

ନଟବର କୃଷ୍ଣ    ସଙ୍ଗେ ଗୋପୀଗଣ
ନାଚୁଥିଲେ ଦିନରାତି,
ଜଟିଳା କୁଟିଳା    ନଟୀ ବୋଲି ଦେଲେ
ରାଧିକାକୁ ଅପଖ୍ୟାତି ।

ଟକି ସିନେମାର    ଝୋଙ୍କିଟିଏ ଥରେ
ଦେଖାଇଲି ଯେଉଁ ନାଟ,
କହୁଥିଲେ ଲୋକେ    ପ୍ରାଣ ଥିଲେ ପାଇ-
ଥାନ୍ତା ସେ ମେଡ଼ଲ ପାଟ !

ଏଥିରୁ ମୋ ନାଚେ    କ ବାହାଦୁର ବା'
ତଥାପି ବୋଲନ୍ତି ନଟୀ,
ମାନ ଅପମାନ    ଯାହା ଥାଉ ମୋତେ
ବାଧେ ଏ 'ନଟୀ' ପଦଟି ।

କାର୍ତ୍ତିକ ମାସର    ପ୍ରଭାତରୁ ଉଠି
ପ୍ରାତଃସ୍ନାନ ବିଧି ପାଇଁ,
ଭକ୍ତିଭରେ ଡାକି    ପ୍ରିୟସଖୀ ସଖୀ-
ମାନଙ୍କୁ ଆଣେ ଉଠାଇ ।

ନାଚ ନାଚ ଆମୋଦ ଉପଭୋଗ କରିଥାଆନ୍ତି । ତାଲଖାଇ ଗୀତର ସୁର ଯେପରି ଲଳିତ ଓ ଶ୍ରୁତିପ୍ରୀତିକର, ବାଦ୍ୟ ଓ ନୃତ୍ୟ ତଦ୍ରୂପ ମନୋମୁଗ୍ଧକର । ଏହି ପର୍ବାନୁଷ୍ଠାନର ମୌଳିକ ଭିତ୍ତିଭୂମିରେ ଅହିଂସା, ଅସ୍ପୃଶ୍ୟତା ନିବାରଣ ଆଦି ସଂସ୍କାର-ମୂଳକ କାର୍ଯ୍ୟକଳାପର ସୂଚନା ପ୍ରତିଫଳିତ ହୁଏ ।

ସ୍ନାନ ସାରି ହରି- ପାରବଣ୍ଟଙ୍କର
ବନ୍ଦନା-ସଙ୍ଗୀତ ଗାଏ,
ତୁଳସୀଙ୍କି ଧାଇ ତୁଳସୀ ନ ହୋଇ,
'ବନ୍ତୁଣୀ' ପଦଟି ପାଏ ।

ଧନ୍ୟ ଏ ସଂସାର ଧନ୍ୟ ଲୋକଙ୍କର
ବ୍ୟବହାର ବୁଝାମଣା,
ସେହେତୁ ଅନେକେ ନିନ୍ଦାର ଧମକେ
ହେଉଛନ୍ତି ପଥବଣା ।

ପାଳଟିଏ ମାତ୍ର- ହେଲେ ପିନ୍ଧାଶାଢ଼ୀ
ପାଲଟି ଧୁଏ ଘାଟରେ,
ଦେଇ ଲେଉଟାଣି ଧୋଇହୁଏ ପୁଣି
କଟୋଲୀ ହେଲେ ବାଟରେ ।

ଗାଧୁଆ ସମୟେ କଳସୀଙ୍କ ଭୟେ
ପୁରୁଷ ଘାଟେ ମୋ ସ୍ନାନ,
ଗୁଡ଼ାଖୁ ସାବୁନ ନେଇଥାଏ ଯାହା
ଫେରି ନ ଆସେ ସେମାନ ।

ଡଳିପାଦ ଘଷି- ଘଷି ହସିହସି
'କହୁଥିବ ଯେବେ କଥା,
ଘାଟ ପଥରର ବ୍ୟଥା ଟାଣିନଏ
ଅସହଣୀଙ୍କର ମଥା ।

ସଞ୍ଜବେଳେ ପୁଣି ଯେଉଁ ଅସହଣୀ
ନାଗଙ୍କ ନେତେ ମୁଁ ଜଣା,
ତାଙ୍କ ଡରେ ଖାଲି ପଡେ ମତେ ଗୁଳି-
ପିବାକୁ ଧୂବେନ କଣ୍ଡା ।

ପାଣିକୁଆଁ ବେଳେ ପଶିଯାଏଁ ଜଳେ
ବଳେ ଆସିଗଲେ କେହି,
ଜନଶୂନ୍ୟ ପଠା ଜାଣି ପାଣିଲୋଟା
ସଙ୍ଗେ ନ ଥିବାରୁ ନେଇ ।

ଦାନ ପୁଣ୍ୟେ ଧନ ନଥିଲେ ହେଁ ମନ
ନୁହେ କଠୁର ପଥର,
ନାମ-ସଂକୀର୍ତ୍ତନ ମଣ୍ଡଳୀରେ ପାଣି
ଛାଳେ ମୁଁ ଥରକୁଥର ।

ମଣ୍ଡଳୀରେ ଦିନେ ପ୍ରେମଭୋଳେ ପାଣି-
ମାଠିଆ ଦେଲି କଚୁଡ଼ି,
ମୋ ମୁହଁକୁ ଦେଖି ହସିହସି ଅଧେ
ପିଲା ନାମ ଦେଲେ ଗୁଡ଼ି ।

ଗାଆଁକୁ ଆସିଲେ ବାବାଜୀ-ମାତାଜୀ
ଉଲସି ଉଠେ ମୋ ଗୁଡ଼ି,
ଜ୍ଞାନ ନେବା ପାଇଁ ଧୂନି ଜାଳଦେଇ
ଜାଗି ରହେ ସାରା ରାତି ।

ଭକ୍ତି ମୋର ଦେଖି ବାବା କହେ ତୋତେ
ଦେଖାଇବ ବୃନ୍ଦାବନ,
ମାତା ବୋଲେ ଚିତ୍ତ ଶୁଦ୍ଧ ଥିଲେ କୃଷ୍ଣ
ଘରେ ଦିଅନ୍ତି ଦର୍ଶନ ।

ପଣ୍ଡାଘର ପିଲା ଗୁରୁ ବାପା ମୋର
କହନ୍ତି ବ' ଏଇ କଥା,
ମୂରୁଖ ସେମାନେ ଗିଆନେ ଧିଆନେ
ଘୂରାଉଥାନ୍ତି ଯେ' ମଥା ।

ଦିଅଁ ଦରଶନେ ତୀରଥ ଭ୍ରମଣେ
କିଛି ନାହିଁ ପୁଣ୍ୟ ଫଳ,
ମନଟି ନିର୍ମଳ ଥିଲେ ଏ ପିଣ୍ଡରେ
ବହୁଅଛି ଗଙ୍ଗାଜଳ ।

'ସୁଭଦ୍ରାହରଣ' ନାଟ ହେଉଥିଲେ
ଆଗେ ମୁଁ ହୁଏ ହାଜର,
ଗାଲେ ପାନଖିଲି ଭାଲେ ମୋ ଟିକିଲି
ମୁଣ୍ଡେ ଚୁଆ ଜରଜର ।

ଅର୍ଜୁନର ଠାଣି          ସୁଭଦ୍ରା ଗୃହିଣୀ
ଦୂତର ଦେଖି ଛଟକ,
ଭାବେ ମନେମନେ          ହେଲେ ସବୁ ଜନେ
ଦେଖୁଥାନ୍ତି ଏ ନାଟକ ।

'ପରଥମ ଭେଟ'          ଦଣ୍ଡନାଟଟିଏ
ଦେଖିଲି-ଦିନେ ସପନେ,
କୁଞ୍ଜଘରେ ପଶି          ଚୁମ୍ବ ଦେଲେ କୃଷ୍ଣ
ରାଧାସୁନ୍ଦରୀ ଲପନେ ।

ନାଟଦୂତୀ-ବେଶୀ          ଯୁବାମଣି ଆସି
ବସିଲା ମୋ ପଲଙ୍କରେ,
ମୋ ଦେହେ ତା' ହାତ          ନ ଲାଗୁଣୁ' ଚେତ
ଉଠି ବସିଲି ସତ୍ତରେ ।

ଅଣ୍ଡାଳି ଦେଖିଲି          ଚଉକାଠ ଅବା
ସତେ ଆସିଥିବ ବୋଲି,
ନାଟଦୂତୀ କେଉଁଠି          ଆସନ୍ତା, କବାଟ
ହୋଇ ତ' ନଥିଲା ଖୋଲା ।

କୁକୁଡ଼ା, କଜଳି-          ପାତି ରାବ ଦେଲେ
ଭାବିଲି ମୁଁ ମନେମନେ,
ଚେତିଲି କାହିଁକି          ସପନ ସୁଖଟି
ଘଟିଥାନ୍ତା ବା' ସପନେ ?

ମାଆ ବାପା ମୋତେ          ବଢ଼ାଇଲେ ସିନା
ବେଶି ପଢ଼ାଇଲେ ନାହିଁ,
ନୋହିଲେ ତ ନାଟେ          ବାହାରିଥାନ୍ତି ମୁଁ
ସୁଭଦ୍ରା-ଦୂତିକା-ସାଜି ।

ନଟୀ ବୋଲି ଲୋକେ          କହିଥାନ୍ତେ ପଛେ
ସାଜିବାରୁ ରାଧା, ଦୂତୀ,
ଦେଖାଇଦେଇ ମୁଁ          ଥାନ୍ତି ସମାଜକୁ
ରାଧା-ସନ୍ନ୍ୟାସିନୀ-ଜ୍ୟୋତି ।

ଆସିଥିଲା ଏବେ                    କଠକର ପାଲ୍
    ଗାଏକ ଥିଲ ଯେ ପିଲ,
ପରଶଂସି ମୋତେ                    ମୋ ଲାଗି ଗୁପତେ
    ଶାଢ଼ୀ କଣି ଦେଇଥିଲା ।

ଗୁଣୀ ବୁଝେ ଏକା                    ଗୁଣର ମହତ୍ତ୍ୱ
    କି ବୁଝିବ ଗୁଣହୀନ ?
ଜଳ ଗଭୀରତା                    ଭେକ ଜାଣିବକି
    ଜାଣିପାରେ ସିନା ମୀନ !

ସବୁଦିନ ପାଇଁ                    ରହୁଥିଲା, ପାଲ୍
    ଶିଖାଇବ କହୁଥିଲା;
ଗ୍ରାମେ ବୁଢ଼ାଦଳ                    ଲୁଣ୍ଡ ସଣ୍ଡଙ୍କର
    ମନକୁ ସେ' ମୋହୁଥିଲା ।

ଭଲ କଥା ସିନା                    ଗାଆଁରେ ସେଭଳି
    ଲୋକ ଥିଲେ ଜଣେ ଜଣେ,
ବୁଢ଼ାମାନେ ଏହା                    କି ବୁଝିବେ, ତାଙ୍କୁ
    ମସ୍ତୀଘରେ କିଏ ଗଣେ ?

ବସାଇଲେ ପୋଥି                    ମିଶ୍ର, ଶତପଥୀ
    ଏ ଆଦି ଯେତେ ଗାପୁଙ୍କ
ଆସନ୍ତି, ଦ'ଦିନ                    ଘରେ ଆମ ପଡ଼ା
    ବସା ହୁଏ ସେମାନଙ୍କ ।

ସେବା ଭକତି ନମା                    ଦେଖାଏ ତାହାଙ୍କୁ
    ପାଇବା ପାଇଁ ଟିଆନ,
ପୁରାଣ ବଢ଼ିବା                    ଯାଏ ମୋ ଖରଚେ
    ଚଳାନ୍ତି ସେ ଗୃହା, ପାନ । *

* ପୁରାନ୍ ବସାଲେଁ ଗାଆଁ ଥିକ,
ମୋର୍ ଚହ୍ଲାର୍ ଯେତେ ଗାହ୍ନାକ;
ଗିଏ ଆସୁ ବ' କାଏଁ ପଁଡ଼ା, ଦାଶ୍
କାଏଁ ଶତ୍ପଥୀ, ମିଶ୍ର, ପଣ୍ଡା ।
ଶୁନ ଗୋ ମା' ବହ୍ନେ............ !

(୧) ଦୂର ଗ୍ରାମେ 'ହର- ହାଟ' ହେଲେ ରବି
ଯାଏ ଦୁଇଗ୍ରର ହନ,
ସେପରି ଗୁଣୀଙ୍କ ଗୁଣ ଦେଖି ଦେଇ
ଆସେ କଚ୍ଛ ପ୍ରୀତିଚହ୍ନ ।

ରଥ-ଦୁତିଆଟି ଦେଖିଯାଏଁ ହୋଇ
(୨) ବସିଲେ ଭୁତଭୁତଆ,
ପ୍ରୀତି-ଉପହାର ହଆନଆ ଲଗେ
ଦେଖି ସାଥି ପୀରତିଆ ।

ଲୋକ ଗହଳରେ ବାଏକ ପିଲର
ପ୍ରେମ ସଙ୍ଗୀତ-ମାଧୁର୍ଯ୍ୟ,
ବୁଝି ହୁଏ ନାହିଁ ସେ ସଙ୍ଗେ ସେପରି
ପାଲଆ ଭଙ୍ଗୀ ଗୃହୁସ୍ଥ ।

ପଇସା ପାଏ ମୁଁ ଅଣା ଅଣା, ପେଡ଼ା
ରସଗୁଲା ଦନାଦନା,
ମନ ବୁଲୁଥାଏ ଇଜତକୁ ଦେଖି
ଚଜକୁ ତୁ' ଅନାଅ ନା' ।

ଗାଆଁ ଗଣ୍ଡା କେବେ ଗଲେ ବ' ମୋତେ କ
ବାବୁଏ ହଅନ୍ତ ଗୁଡ଼ ?
ମାସେ ଖଣ୍ଡେ ରଖି ଲେଉଟାଣି ବେଳେ
ଖଞ୍ଜିଦ୍ୟନ୍ତ ହଳ ଗାଡ଼ ।

---

(୧) 'ହରହାଟ'—ଯଜ୍ଞବିଶେଷ । ଏହି ହରହାଟ ବା ହରଯଜ୍ଞରେ ଏକ ସପ୍ତାହ ବ୍ୟାପୀ ମେଳା ହୁଏ । ବିଶେଷତଃ ସମ୍ବଲପୁର ଅଞ୍ଚଳରେ ଉକ୍ତ ଯଜ୍ଞାନୁଷ୍ଠାନର ପ୍ରସିଦ୍ଧି ଅଛି । ବର୍ଷାନୁବର୍ଷ ଏହି ଅନୁଷ୍ଠାନଦ୍ୱାରା ଅର୍ଥ ଏବଂ ସ୍ୱାସ୍ଥ୍ୟ ତଥା ସାମାଜିକ ମାନମର୍ଯ୍ୟାଦା ଦୃଷ୍ଟିରେ ଜନସାଧାରଣଙ୍କର ଲଭ ଅପେକ୍ଷା କ୍ଷତିର ପରିମାଣ ଅଧିକ ହୁଏ । ତଥାପି ଏହି 'ହରହାଟ' ବା 'ହରଯଜ୍ଞ'ର ଅନୁଷ୍ଠାତା ଓ ପରିଚାଳକବର୍ଗଙ୍କ ପକ୍ଷରେ ଏହା ଗୋଟାଏ ଧାର୍ମିକ ବ୍ୟବସାୟରେ ପରିଣତ ହୋଇଗଲଣି ।

(୨) ଭୁତ୍‌ଭୁତଆ—ସନ୍ଧ୍ୟାକାଳୀନ ଅନ୍ଧାର ।

(୧) ଧାଳ ଗୋଟା ମୁହଁ ନ ହେଲେହେଁ ଦେ
ଲୋକ କହନ୍ତି ଏ ଦେଖି,
(୨) ଲେଉଟି ସେ ଯୁବା ଅନାଇବ ମୋତେ
ସତେ ତା' ଆୟୁଷ ବଳିବ ।

ଜଳଜଳଲଗା ମୋ ବଜୁଳିବତିରେ
ଆଖି ଲାଗିଲେ ତା' ମୁହେଁ,
ଚମକୁଥିବ ସେ' ସାରାରାତି, କଥା
ହୋଇ ନଥିଲେହେଁ ଦୁହେଁ ।

(୩) କହେ ମୋର ଜନା ପିଲାବେଳେ ନାନା
ରୋଗେ ଭୋଗିଥିଲ ଦୁଃଖ,
ଏବେ କହୁଛି ଦୁଃଖେ ଜଣାନାହିଁ ମୋତେ
ଝଟକିଲ ଦନ୍ତ ମୁଖ ।

ମାସ ଥରେ ଥରେ ଚକଜାଣି କାହିଁକି
ବଦଳିଯାଏ ମୋ କାନ୍ତି,
ଖାଇବାକୁ କିଛି ରୁଚେ ନାହିଁ, ଯାହା
ଖାଏ ହୋଇଯାଏ ବାନ୍ତି ।

ଗଉନ୍ତୁଆ ବାବୁ ଜାଣିଲେ ଏସବୁ
ଔଷଧ ଦ୍ୟନ୍ତି ପଠେଇ,
ବୁଝି ସେ ଔଷଧ ପିଇଦେଲେ ପୁଣି
ପଠେଇ ଦ୍ୟନ୍ତି ମିଠେଇ ।

(୪) ବାଧିକା ହେଲେ ମୁଁ ପ୍ରାଣରାଧିକାର
ଛୁଇଁ ନ ଦେଖନ୍ତି ଦେହ,

---

(୧) ଧାଳ—ଉଜଳ, ଜ୍ୟୋତି । (୨) ଅନେକଙ୍କ ଧାରଣା, ନାରୀରୂପଧାରିଣୀ କୌଣସି ଦେବୀଙ୍କ ଆକସ୍ମିକ ସାକ୍ଷାତ୍ ଘଟିଗଲେ ସମ୍ମୁଖୀନ ବ୍ୟକ୍ତିକୁ ଦେବୀ ସତର୍କ କରି ଦିଅନ୍ତି ଯେ, ପଛପଟକୁ ସେ ଲେଉଟିବ ନାହିଁ । ଯଦି ଲେଉଟିବ, ଦେବୀଙ୍କ କୋପରେ ଅବାଧ ବ୍ୟକ୍ତି ମରିଯିବ ।

(୩) ଜନା—ପିଉସୀ । (୪) ବାଧିକା—ବେମାର । ପ୍ରାଣରାଧିକା—ଏ ସ୍ଥଳେ ନିଜ ସ୍ତ୍ରୀ ପ୍ରତି ପ୍ରଯୁଜ୍ୟ ।

କେମନ୍ତେ ଜାଣିବ ମୋହଠାରେ ତାଙ୍କ
କାହିଁପାଇଁ ଏତେ ସ୍ନେହ !

ନୁହେ ମୁଁ ଡାକ୍‌ମୀ ନୁହେ କୁହୁକମୀ
ନୁହେ ମୁଁ ଘରଦାଓ୍ୱାଲୀ,
ନଜାଣେ ମୋହମୀ ମନ୍ତର, ଜାଣେନା'
ମନ ବମୋହନୀ ଗୃଲି ।

(୧) ସୁନାର ପଏଁର ବାକସେ ପଡ଼ିଛି
କଶୋର୍ଶ ବୟସୁଁ ମୋର,
ପଇଁରକୁ ଦେଖି କେତେ ଭାବ ଗୃଣି
ମନେ ହୋଇଯାଏ ସୋର ।

(୨) ଗୁଡ଼ହାତେ ଆମ ଗୁପଡରେ ସେ'ଠା
ମାରୁଆଡ଼ୀଘର ପିଲା,
"ଖଟିଗଲା ବେଳେ ପିନ୍ଧିବୁ" ବୋଲି ସେ
ଶଠି ଲେଖି, ଦେଇଥିଲା ।

ଥୋଇ ଦେଇଛି ମୋ ପାଟଶାଢ଼ୀ ପୁଣି
ନାକ-କାନ-ଅଳଙ୍କାର,
ଏ ପୁଞ୍ଚା ବୟସେ ଅଚ୍ଛୁଟା ମାନସେ
ଛୁଇଁ ନାହିଁ ଅହଙ୍କାର । *

ଠାକୁରାଣୀ ସାଜ ଗୃକରାଣୀ ଖୋଜ-
ବାକୁ କାହିଁ ମୋର ଧନ ?

---

(୧) ପଏଁର, ପଇଁର—ପାଦାଭରଣବଶେଷ (ପସ୍ଚିମ ଶବ୍ଦଜ) ।
(୨) ଗୁଢ—ଗୃକର ।

* ହାତେଇ ନେଇଛେଁ ଡ଼ଁଶୀ ଝଲ୍‌କା
ନାଇଁ୍ କାନେଁ ବଲିଁ ମୁହଁ୍ ମଲ୍‌କା
ଡଥାବ ତ' ଅଧେ ଲୋକ୍ ବଲ୍‌ସନ୍
ମଲ୍‌ମଲି ମୁହଁୀ କଅ୍‌ଲକଣ ।
ଶୁନ ଗୋ୍ ମା' ବହନେ........!

ଦୁଇଯୋଡ଼ା ପାଣି                ଦ’ ବେଳକୁ ଆଣି
ନଜେ ମୁଁ କରେ ରନ୍ଧନ ।

କାଖେ ମୁଣ୍ଡେ ମୋର                ଥାଏ ଯେଣୁ ପାଣି-
ଭରା ଦୁଇଟି ମାଠିଆ,
ଦନେ ଦନେ ଥକ                ପଡ଼ବାରୁ ବାଟେ
ହୁଏ ଥରେ ଥରେ ଠିଆ ।

ବଚନ ଦୁନଆଁ                କା’ ମନର ନଆଁ
ଖୋଜବ କଏ କାହିଁକ ?
ଠିଆ ହେବା ଦେଖି                କହନ୍ତ ଅନେକେ
ବାଟେ ଅନାଏ ଗ୍ରାଇକ ।

ଓହ୍ଲାଇ ରଖିଲେ                ମାଠିଆ ଯୋଡ଼ାକ
ଜୀବନ ଲଗେ ଉଶ୍ବାସ,
ଚେହେରା ସଜାଇ                ପଦାକୁ ବାହାର
ମନକୁ ଦଏ ଉଲ୍ଲାସ ।

କେହ୍ନ ଯୁବଖର                ଛୁନୀ ହେଲେ ଘର
(୧) ରଖେ ସେ’ ସାଥି-ଶୁଆଣି,
ମୁଁ ତ ଏକାକନୀ,                ଯେ ଯାହା କହଲେ
ସବୁ ସହେ ମୋର ଗୁଣ୍ଡ ।

ଅନେକେ ଖୋଜନ୍ତ                ଧନ ଜନ ମାନ
ମୋ’ ମନ ନୁହେ ସେପରି,
ସ୍ନେହ-ପୀରତରେ                କଟାଏ ଜୀବନ
ହେବ ନାହିଁ ତ ଅମରି ।

ଘର ପର ମୋର                ସଭିଏ ସମାନ
ଗାଆଁ ପରଗାଆଁ ଏକ,
ଭ୍ରାତା-ଭରତାରେ                ଭେଦଭାବ ନାହିଁ
(୨) ଭୁଲଯାଏ ନାତା-ଠେକ ।

(୧) ଶୁଆଣି—(ଉଭୟ ଲିଙ୍ଗ) ମୂଲ ନେଇ ଯେ ଅନ୍ୟର ଘରେ ଶୁଏ ।
(୨) ନାତା—ମାନ୍ୟତା, ଯଥା—ଭାଇ, ଭଣଜା, ଖୁଡ଼ୁତା, ମାମୁଁ ଇତ୍ୟାଦ ।

ବଜାରରେ ଜଣେ ଖଜା ଦୋକାନୀଙ୍କି
ଦେଖି ସହାସବଦନ,
ପଚାରିଲି, ବାବୁ ! କୁଶଳ ତ’ ସବୁ
ଉଲ୍ଲାସେ ଅଛି ତ’ ମନ ?

ଦୋକାନର ଘର ଦେଇ ଜଣକୁ ସେ’
ଠାରି ମୋତେ ଅନ୍ତରାଳେ,
ନେଉଥିଲେ କିଛି ଗୋପନୀୟ କଥା
କହିବାକୁ, ଏହି କାଳେ ।

ଆମ ଗାଁର କେତେ ବଜାରୁଣୀ ତାହା
ଅନାଇଁ କଲେ ବାହାନା,
ମାଆ ବୁଢ଼ୀକି ମୋ କହିଲେ, “ଏ ଗୁଡ଼-
ଆଣୀର ମୁଖ ଗୁହାଁନା’ ।”

କଥାରେ ମୋ ଜାତି ଖସିଗଲା ତ’ ସେ
ବସିଲା ଯାଇ କା’ ମୁଣ୍ଡେ ?
ଖଜାଦୋକାନୀର ଜାତି ପଶିଲା କି
ବଜାରୁଣୀଙ୍କର ତୁଣ୍ଡେ ?

ଜାତିଆଣୀ ସଖି- ରାଣୀଙ୍କର ଜାତି
ସୁନେଲି ରଙ୍ଗ ସେବତି,
ନାକଫଟା ଗନ୍ଧ ବାହାରୁଛି ତା’ର
ଭିତରୁ ଗୋବର-ଛତି ।

ଗାଆଁ ମକଦ୍ଦମ, ପଣ୍ଡାବୁଢ଼ା ଆଦି
କି ହେବ ଜାତିଆ ହେଲେ,
ଗଣ୍ଡା, ଘାସୀ-ଘର ତରୁଣୀ ବି’ ତାଙ୍କୁ
ଡରୁଥାନ୍ତି ରାତିବେଳେ ।

ଚୂପୁରିକୁଟୀଙ୍କ ମୁହଁ ପୋଡ଼ିଯାଉ
ପୋଡ଼ୁ-ସେ ଚୁପୁରିକୁଟା,

(୧) କେ' ଦେଖିଛୁ ମୋର ଦୋଷ ଗୁନ୍ହା କହୁ
ବୋଲନ୍ତୁ ସା' ଛି ଛି କୁଠା ।
ସଖୀଙ୍କ ଆଖି ତ' ଅପବଶ ହୁଏ
ଅନାଇ ମୋତେ ପଥରେ,
ବଡ଼ଦେଉଳର ଚିତ୍ର ଖୁଣ୍ଟିଁ ତାଙ୍କ
ନେତ୍ର ପୂତ ହେଉ ଥରେ ।

ମୋ କଥାରେ ଯେଉଁ ଭାଇଙ୍କ ମରମେ
ଭେଦୁଛି ପରମ-ବ୍ୟଥା,
ସେ ଚିତ୍ରେ ନଜର ଦେଲେ କାହିଁ ଜନ
ନ ଯାଉଛି ତାଙ୍କ ମଥା ?

(୨) ଅକୃତ୍ରିମ ପ୍ରିୟ ଅଭିନୟ ଯିନା
ଜୀବନ ଗଠନ କରେ,
ଶାସ୍ତ୍ର-ସାରଦର ସାରଧାରା କାହିଁ
ଗୁରୁକାର ଭୂଷା ହରେ ?

କିଶୋରୀ ଜୀବନେ ନବ ଯଉବନେ
ଯେ ଧନ୍ୟ ଦେଲା ଚରଣ,
ରସିକା ବେଶନେ ନାଟ୍ୟ ଦରଶନେ
ନଷ୍ଟ ହେଲା ଆଚରଣ ।

ଯେଉଁ ସୁବାମଣି ସାଜି ରାଧାରାଣୀ
ରହେଁ ନ ରହିଁଲ ଘର,
ନାଚି ନାଚି ଗାଇ ଝୁଲୁଣା ନଗର
ସେ' ମୋ ମନ ନେଲା ହରି ।

ଆଲୀ ତୋଳି କରେ ଯେବେ ଅଳି କରେ
ଆଲୀଦଳେ ହସିହସି,

(୧) ଗୁନ୍ହା—ଅମାର୍ଜନୀୟ ତ୍ରୁଟି ।

(୨) ମହାତ୍ମା ମହାପୁରୁଷଗଣ ନିଜ ନିଜ ଜୀବନ-ନାଟକରେ ଯାହା ଦେଖାଇ ଛନ୍ତି, ତାହାହିଁ "ଅକୃତ୍ରିମ ପ୍ରିୟ ଅଭିନୟ" ।

ଅଳଗୀର ସଙ୍ଗେ     କାମକାଣ୍ଡ ଅଙ୍ଗେ
ଯାଉଥାଏ ପଣିପଣି ।

ତରୁଣୀଙ୍କ କରୁ     ମୁଦ, କଣ୍ଠିମାଳ,
କଅଁପଶୀ, ମଞ୍ଜିକଡ଼ି,
ଦିଆ ହେବା ବେଳ     ନ ଠାକ ତା' ଥାଳୀ
ପରେ ପଡ଼ୁଥାନ୍ତି ଝଡ଼ି ।

ଥାଳୀରେ ନଥୋଇ     ଦିଏଁ ଯା ଧରାଇ
ଲାଗି ରଖିଥିବା ପାନ,
ପାନ ନୁହେ ତାହା     ମଣି ପ୍ରାଣନାହା
ପ୍ରେମ-ଚିହ୍ନ କରେ ଦାନ ।

ଗାଆଁରେ ଛନ୍ତି ଯେ     ସଖୀ ସଙ୍ଗାତ ମୋ'
ଗଜାମୁଗ, ଚମ୍ପାଫୁଲ,
ମହାପରସାଦ,     ଗଙ୍ଗାଜଳ, କଣ୍ଠ-
ପାଣି, ମକର, ବଉଳ ।

ପରାଣବନ୍ଧୁ ମୋ'     କହେ ସେଇ ଏକା
ଲୁଟିଛି ସବୁରି ପ୍ରୀତି,
ମୁଁ ପରା ତା' ପ୍ରାଣେ     ଉଲ୍ଲାସ ଦେବାକୁ
ସଭିଙ୍କି ଯାଇଛି ଜିତି ।

ଆଉ କେଣେ କହେ,     ପାଇଛି ତୋ' ଯେଉଁ
ପ୍ରେମମଧୁ-ପରସାଦ,
ମନୋଜ କ୍ଷୁଧା ମୋ'     ମେଣ୍ଟିଲେହେଁ ମନୁ
ଯାଉନାହିଁ ତା' ସୁଆଦ ।

ନାଟୁଆ-ଗୁରୁ ମୁଁ     ହେଲେହେଁ ତୋ ଛବି
ନାଚୁଛି ନୟନେ ମୋର,
ମସ୍ତକ ମୋ' ଭିଡ଼ି     ରଖିଛି, ଛିଡ଼ାଇ
ବସିଲେ ତୋ' ପ୍ରୀତି-ଡୋର ।

ଧନ୍ୟ ତୁମ୍ଭ କେତେ                    ମଦନରେଖାଙ୍କୁ
କରନ୍ତୁ ମହତରଖା,
ମନପରଖା ଭି                    ହୋଇ ଯାଉଛନ୍ତି
ତୋ ସ୍ନେହେ ଚୁମ୍ବନଟେଖା !

ଏ ସବୁ ମୋ ଗୁଣ-                    ପରଶଂସା ଆଦି
ପଡ଼ଯାଏ ସବୁ କାନେ,
ଜାତିଛଡ଼ା ତମ୍ପ                    ପର ଲମ୍ଫ ଦେଇ
ଉଠନ୍ତି ଜାତିଆମାନେ ।

ଛୁଇଗଲା ବାଟେ                    ମୋ ଛାଇ ନକଟେ
ଛୁଇଯାଏ ତାଙ୍କ ଜାତି,
ଛାତି ଫୁଲାଇ ମୁଁ                    କଥା କହୁଥିଲେ
ଫାଟି ଯାଉଥାଏ ଛାତି ।

ଯାହା କଲେ ସବୁ                    ଯଶସ୍ତି କରମ
ଆଦର ପାଇଁ ରହିଛି,
ଜାତିଆଙ୍କ ଠେକ-                    ଗ୍ରନ୍ଥମାନ ଯାକ
ଧରମ ଆଗେ କହିଛି ।

ହାଣ୍ଡିରେ ଖାଇବ                    ମୁଣ୍ଡକୁ ଧୋଇବ
ପାଦେ ପଡ଼ିଲେ ତୋରୁଣି,
ନପାରେ ଦେଖାଇ                    ଜୁହାର ମାଁ ଏଇ
ଜାତିଆଙ୍କ ସ୍ତ୍ରୀ ଠାଣି ।

ଜାତିଆଙ୍କ ଘର                    ବାପାଙ୍କୁ ଯେ ଶାସ୍ତ୍ର
ନାନା ଦୋଷେ ଦିଏ କ୍ଷମା,
ପୁରୁଷ ଜାତିର                    ଲେଖା ତାହା ଲେଖି
ନାହାନ୍ତି ତ' ଉମା, ରମା ।

ହେଉ ହରି, ହର                    ଅବା ବେଦବର
ଦେବଋଷି, ବ୍ରହ୍ମଋଷି,

ଯେ କେହ୍ନ ଲେଖୁ ବ’ — ଆଖି ବୁଜଦେଇ
ଲେଖିଛୁ ତା’ ମନଖୁସି ।

କେଉଁ ମାନବୀ କ — ଦେବୀ ଦାନବୀ କ
ପଢ଼ୁଛନ୍ତି ସେ’କ କାହିଁ ?
ଯାହା ଲେଖିଦେଲେ — ପୁରୁଷ, ସେସବୁ
ବେଦ ହୋଇଯିବ ନାହିଁ !

ମନଗଢ଼ା ଶାସ୍ତ୍ର — ପୁରୁଷ-‘ଦେବତା’
ନାରୀ ତା’ ଚରଣ-ଦାସୀ,
ସଦ୍ୟଭୋଗ -ସ୍ୱାଦ — ଦେବତା ପାଇବ
ଦାସୀର ପ୍ରସାଦ ବାସି ।

ଯତ୍କୁଡ଼ି ସମସ୍ତ — ହେଲେ ଦେବତାଙ୍କ
ପାଉ ପଲଙ୍କ-ବିଛଣା,
କାଳବେଳ ଜାଣି — ପଦ-ଶୁକବଣୀ
ଧରିବ ତେଲ, ବିଚଣା ।

ତପତ ଭୂଇଁରେ — ଖୁଲଲେ ଦେବତା
ପାଦେ ଯୋତା, ହାତେ ଛତା,
ଖାଲିପାଦେ ପଛେ — ଗୋଡ଼ାଇବ ଦାସୀ
ପଣନ୍ତେ ଘୋଡ଼ାଇ ମଥା ।

ଦୁରୁବଳ ବୁଢ଼ା- — ଦେବତାର ଯୋଗ୍ୟ
କୋମଳବୟସୀ ଦାସୀ,
ପାକୁଆପାଟିକୁ — କଦଳୀ-ଶାକର
କଏ ନ ଦେବ ସାବାସି !

ସହ୍ୟ ହୁଏ ନାହିଁ — କହ୍ୟ ହୁଏ ନାହିଁ
ପୁରୁଷଙ୍କ ସ୍ୱାତନ୍ତ୍ର୍ୟ,
ସରବ ସହଣୀ- — ଗୁଣେ ସିନା ତାଙ୍କୁ
କୋଳେ ଧରିଛୁ ଧରଣୀ !

ଦଶମାସ ମାଆ   ଗର୍ଭେ ବହି ଶିଶୁ
ମୁଖେ ଦଏ କ୍ଷୀରପାନ,
ଶୋଷ ଭୋକ ସହି   ସନ୍ତାନର ପାଇଁ
ପାଳେ ଓଷା ବ୍ରତମାନ ।

ମାଆ ସାଥି ଜଣେ   ଥିବା ଯୋଗୁଁ ପିତା
'ବାପ' ବୋଲି ପଡ଼େ ଜଣା,
ଏ ନିଶ୍ଚେ ମୋ ବାପ   ବୋଲି କି ଅଛି ବା'
ବାପ-ପ୍ରମାଣ ଠିକଣା ।

ତଥାପି ସନ୍ତାନ   ବାପ ନାମେ ହୁଏ
ସମାଜରେ ପରିଚିତ,
ଜନ୍ମ ଦେଇ ସୁଦ୍ଧା   ସନ୍ତାନାଧିକାରୁ
ଜନନୀ ସଦା ବଞ୍ଚିତ ।

କେ କହିବ କେବେ   କାଳୁ ଚଳୁଛି ଏ
ପୁଂସର ପକ୍ଷପାତିତା ?
ନାରୀ ବୁଝିଛି ମୋ'   ଭାଗ୍ୟ ଏହା ତାରି
ଦେଇଛନ୍ତି ଜଗତପିତା ।

ଶୁଣୁ ମାଆ ମୋର   କହୁଥିଲେ ଦିନେ
ମୂର୍ଖ ବାପ କଥା ମାନି,
ପୁତ୍ରବରେ କଏ   ପରୁ ନିଜ ମାଆ
ମୁଣ୍ଡ ଦେଇଥିଲା ହାଣି ।

ଧିକ ସେ ପାଷଣ୍ଡ   ଧିକ ତା' ଜନମ
କି ପ୍ରାଣେ ମାତୃରକତ,
ବୋଳି ନିଜ କରେ   ନାରକୀ ସମାଜେ
ବୋଲାଏ ପିତୃଭକତ !

ଯେଉଁ ଶାସ୍ତ୍ରେ ଯେଉଁ   ପୁରାଣେ ଏ ପାପୀ
ମାତୃହନ୍ତାର ମୂର୍ତ୍ତି,

ପିତୃଭକ୍ତ ରୂପେ ଲେଖା ହୋଇ ପୁଣି
ସମାଜକୁ ଦିଏ ପ୍ରୀତି ।

ସେହି ଶାସ୍ତ୍ର ସେହି ପୁରାଣ ସେ' ମାତୃ-
ଧାତାର ଜାତି ସମାଜ,
ସ୍ୱାହାପତି ଗର୍ଭେ ଅର୍ପିତ ହେଲେହେଁ
ସ୍ୱାହା ଦେବୀଙ୍କି ତା' ଲଜ !

ଯେଉଁ ସନ୍ତାନର ବାପ ବୋଲି ଆଗେ
ବାପ ନାମ ହୁଏ ଲେଖା,
କେତେ ସ୍ଥାନେ ସେଇ ସନ୍ତାନର ଭାଗ୍ୟେ
ନମିଳେ ବାପର ଦେଖା ।

ଗୁପତ ପ୍ରେମର ନିଯମ ଶପଥ
ଉଭେଇଯାଏ ସକଳ,
ରୋପଣ କରତା ମନେମନେ କହେ
ଖେତ ସମ୍ଭାଳ୍ତି ତା' ଫଳ ।

ଭାଇ ବାପ ପଦ କହିବେ ତୁହି ତ'
(୧) ନୋହୁ କୁନ୍ତୀ, ଦ୍ରୌପଦୀ,
ଦ' ତିନି ଜଣଙ୍କୁ ଦେଖାଇ ଏ ବୋଝ
କା' ମୁଣ୍ଡେ ପାରିବୁ ଲଦି ?

କା' ଅନୁଗ୍ରହରୁ ଦୁର୍ବହ ତା ତନୁ
ନଜାଣେ କ ପ୍ରେମବଧୂ,
କ କରିବ ପ୍ରଶ୍ନା- ମଧ୍ୟୁଁ କେହି ଯଦି
ଥିବ ତା'ର ଗୁପ୍ତ ପତି !

ସରଳ ପ୍ରେମିକ ସତ୍ୟବ୍ରତ ଲୋକ
ନ ହୁଏ କେବେ ପାତକୀ,

(୧) ପୂର୍ବଭାରତରେ ମହିଳା ମହଲରେ କୁନ୍ତୀ, ଦ୍ରୌପଦୀ ଆଦି ବହୁଭର୍ତ୍ତୃକା ହେଲେ ମଧ୍ୟ ଏମାନଙ୍କ ସତୀତ୍ୱ ଓ ପାତିବ୍ରତ୍ୟ ସୁପ୍ରଶସ୍ତୀକୃତ ।

ବୁଝି ପାରୁଛୁ ସେ'   ପାତକୀରୁ ମହା-
ପାତକୀ ପ୍ରେମଘାତକୀ ।

ଜାଣି ଗର୍ଭଧର   କେତେ ସ୍ଥାନେ ନାରୀ
ନେଉଥାଏ ଅଉଷଧ,
ଶତା କାଟି ପୁଂସ   ପଢୁଥାଏ "ମହା-
ପାପ ଗର୍ଭ-ଶିଶୁ-ବଧ ।"

ଏ ଗୁପତ ପାପ-   କଳଙ୍କ କାଳିମା
ହେବାପାଇଁ ମୁଖେ ବୋଳି,
ଲେଖିଛୁ କି ପୁଂସ   ନାରୀଜାତି-ପୁଷ୍ପ
ପୁରୁଷ-ଭ୍ରମର ବୋଲି ?

ସୃଷ୍ଟିରକ୍ଷା ପାଇଁ   ଆଦ୍ୟ ଜାତି ଦୁଇ
ଅଛନ୍ତି ସ୍ତ୍ରୀଗ-ପୁରୁଷ,
ସେହେତୁ ବଢୁଛି   ଆଦିରସ, ମନ
ମୋହୁଛି ଯୁଗଳ ଦୃଶ୍ୟ ।

ଯେଉଁ ଆଦିକବି   ରସ ଅନୁଭବି
ପୁରୁଷକୁ ଭୃଙ୍ଗ କଲା,
କେଉଁ ନିଶାଘେନେ   ପୁରୁଷ-ଭୃଙ୍ଗର
ଭୃଙ୍ଗୀକି ସେ ଭୁଲିଗଲା ?

ପୁରୁଷ ଯଦି ବା   ଭ୍ରମର ତା' ସ୍ତ୍ରିଯ
ଭ୍ରମରୀ କିଆଁ ନ ହେବ ?
କେଉଁ ଯୁକ୍ତି ବଳେ   କାହିଁକି ଲଳନା
ଫୁଲର ତୁଳନା ନେବ ?

ଫୁଲ ରସିକା ତ'   ନାରୀଜାତି, ପୁଂସ
ନେଇ ଫୁଲ-ବ୍ୟବହାର,
'ଦୋଷୀ' ଦୁରୁଗନ୍ଧି-   ଫୁଲ ଦଶା ନେଇ
'ଗୁଣୀ' ହେଉ ଗଳାହାର ।

ସବୁ ଫୁଲେ କାହିଁ ସମ ମଧୁ, ସମ
ସୁଷମା, ସମ ସୌରଭ ?
ରସିକା-ଭ୍ରମରୀ ନନେ ବାରବନ
ପ୍ରିୟ ପୁଷ୍ପ-ପ୍ରେମାସବ ।

ସେକାଳେ ପୁରୁଷ ନିଜ ଭ୍ରମ ଦୋଷ
ବୁଝିନେବ ଅନୁଭବେ,
କେଡ଼େ ପକ୍ଷପାତୀ ହୋଇଛୁ ତା' ଜାତି
ସ୍ୱାଧୀନ ସୁଖ-ବିଭବେ !

ନିଜ ମନେ ପୁଂସ ସୁନା ହେବ ଯେବେ
ସୁ-ନାରୀ ହେଉ ସୁନାର,
ସୁନା କି ପିତଳ ପରଖି ରଖୁ ସେ'
କଣ୍ଟୁ-କଷଟିରେ ଗାର ।

ଏ ଆଇନ ଯେବେ ପ୍ରଚଳିବ, ପୁଂସେ
ନ ପଚାରି ନାରୀଜାତି,
ଗର୍ଭପୀଡ଼ା ଜାଣି ନଥିଲେ ହେଁ ପୁଂସ
କୁନ୍ଥେଇବ ଦିନରାତି ।

ହେବେ ତହିଁ ବାର ଯେତେ ଭେଖଧାରୀ
ସାଧୁ-ଜ୍ଞାନୀ-ବ୍ରହ୍ମଚକ,
(୧) ଶୁକ ରୂପ ଧରି ଭଜୁଛନ୍ତି ହରି
ଯେଉଁ ଶାଗୁଣା ପେଚକ ।

(୨) ଫୁସୁରୁଫାସର କାନକୁହା ସ୍ୱର
ମୋ ମୁଖରେ ଆସେ ନାହିଁ,

(୧) ଶୁକ—"ଶ୍ରୀ ଚନ୍ଦ୍ରଧର" ବୋଲି ଘୋଷୁଥିବା ପିଞ୍ଜରାବଦ୍ଧ ଶୁଆ ପକ୍ଷୀ । (ଅନ୍ୟ ଅର୍ଥରେ) ବ୍ୟାସପୁତ୍ର ଶୁକଦେବ । ଏହି ମହାତ୍ମା ଆଦର୍ଶ ତତ୍ତ୍ୱଜ୍ଞାନୀ ଓ ଆବାଲ୍ୟ ବ୍ରହ୍ମଚାରୀ ଥିଲେ ।

(୨) ଫୁସୁରୁଫାସର—ଗୁପ୍‌ଚୁପ୍ କଥା ।

ମୋ କଥା ପ୍ରମାଣ ଯେ' ଖୋଜିବ, ଦେବ
ଗୋଟିକି ଗୋଟି ଚହ୍ଲାଇ ।

ସେ ଭଲ ଚରିତ୍ର ଥିଲେ ସୁଦ୍ଧା ସତ
କଥାରେ କି ଲଜ ଡର ?
ଜଳେ ବୁଡ଼ି ଜଳ ପିଇଲେ ହେଁ ଜଳ-
ଦେବଙ୍କି କି ଅଗୋଚର ?

ଘରେ ବା' ବାହାରେ ଯାହା କରେ ମୁହିଁ
କହିବଏ ସତ କଥା,
ମୋ ମନେ ପଡ଼ୁଛି **ସତ** କଥାରେ ହିଁ
ଅଛି ଧରମଦେବତା !

ସେ ମୋତେ କାମୁକୀ ବୋଲୁଛନ୍ତି ମୁଁ କି
ବୁଝେ ତା'ଙ୍କ ଝିଅ-ବନ୍ଧୁ ?
ମୋ କାମୁକୀ ଖତ ଶିଖୁଛି ଯେ' ସଙ୍ଗି
ମୋପରି ସେ' ସତ କହୁ ।

ସତ କହିବାକୁ ସତ ସହିବାକୁ
ଯେ' ଜାତିକି ମାଡ଼େ ଲଜ,
ପାପବୁଦ୍ଧି ପାଇଁ ଥିବ କପାଁ, ପୋଡ଼ି
ଯାଉ ସେ ଜାତି-ସମାଜ !



# ଖଣ୍ଡିଏ ପତ୍ର

ପ୍ରିୟ ଖଗେଶ୍ୱର ବାବୁ !

ଆପଣଙ୍କର 'ସୁରଙ୍ଗୀ' କାବ୍ୟର ପାଣ୍ଡୁଲିପି ଆମୂଳାନ୍ତ ପାଠ କରି ଅତୀବ ପ୍ରୀତ ହୋଇଅଛି । ଏ କାବ୍ୟରେ ଆପଣଙ୍କର କବିପ୍ରତିଭା ସ୍ପଷ୍ଟ ଫୁଟି ପାରିଅଛି । ସ୍ଥାନେ ସ୍ଥାନେ କବିତାର ଭାବ ଓ ଭାଷା ଆଉ ଟିକିଏ ସମ୍ଭ୍ରାନ୍ତ ହୋଇଥିଲେ ଅଧିକତର ମନୋହର ହୋଇପାରିଥାନ୍ତା । ଯାହା ହେଉ, ଭାବ ଓ ଭାଷା ପରସ୍ପର ମହତ୍ତ୍ୱ ବିକାଶରେ ପ୍ରତିଯୋଗିତା କରୁଥିବାର ଦେଖି ଭବିଷ୍ୟତ୍ ପାଇଁ ଆଶାନ୍ୱିତ ହେଲି ।

ଭାଷାର ଲାଳିତ୍ୟ ରକ୍ଷା ଓ ଉପଧା ସହିତ ପ୍ରାନ୍ତବର୍ଣ୍ଣର ମିଳନରେ ଆପଣ ଯେଉଁ ଶକ୍ତିମତ୍ତା ଦେଖାଇ ପାରିଛନ୍ତି ତାହା ତ ଏକ ଉପଭୋଗ୍ୟ ବସ୍ତୁ । ଏହା ଭିନ୍ନ ଅନେକ ସ୍ଥଳରେ ବିଶେଷତଃ ନୈଶିକ ବର୍ଷା ତଥା ପ୍ରଭାତ, ମଧ୍ୟାହ୍ନ, ସନ୍ଧ୍ୟାଦି ପ୍ରାକୃତିକ ବର୍ଣ୍ଣନାରେ, ସରସ ଓ ସୁନ୍ଦର ଭାବ ଯୋଜନାରେ, ରଚନାର ଭଙ୍ଗୀରେ, କଳ୍ପନାର ଚାତୁରୀରେ, ବୁଦ୍ଧିର ତର୍କଣାରେ, ସୂକ୍ଷ୍ମ ଦୃଷ୍ଟିଶକ୍ତିର ତୁଳନାରେ ଯେଉଁ ମୃଦୁ ମାଧୁରୀ ବୋଳି ଦେଇଅଛନ୍ତି, ତାହାର ଆସ୍ୱାଦ ଉପଭୋଗ କଲେ ଆପଣଙ୍କ ଶିକ୍ଷା ଓ ବୟସ ବିବେଚନାରେ ଯେ କେହି ସହୃଦୟ ପାଠକ ନିଶ୍ଚୟ କହିବେ—ଏହା ବିକାଶୋନ୍ମୁଖୀ କବିପ୍ରତିଭା ଭିନ୍ନ ଆଉ କିଛି ନୁହେ ।

ସରଳ ଲଳିତ ତଥା ସାର୍ଥକ ପଦର ପ୍ରୟୋଗ ଗୁଣରେ ଅନେକ ସ୍ଥଳର ରଚନା ସ୍ୱତଃ ଲେଖନୀମୁନରୁ ଝଡ଼ିପଡ଼ିଥିଲି ପରି ମନେ ହେଉଛି । ଫଳତଃ କାବ୍ୟଖଣ୍ଡି ସୁଖପାଠ୍ୟ ତଥା କୌତୁକାବହ ହୋଇପାରିଅଛି ।

ଦୁଇ ତିନୋଟି ବର୍ଷ ତଳେ ଆପଣଙ୍କ କେତୋଟି ରଚନା ଦେଖିଥିଲି । ସେଥିରେ ମୁଁ ଏତେ ଦୂର ମୁଗ୍ଧ ହୋଇ ପାରି ନ ଥିଲେହେଁ ଆପଣଙ୍କ

ନୈସର୍ଗିକ ଶକ୍ତିର କିଞ୍ଚିତ୍ ପରିଚୟ ପାଇଥିଲି । ଏଥର ଏହି 'ସୁରଙ୍ଗୀ' କାବ୍ୟର ପାଠରେ ତାହା ସ୍ପଷ୍ଟ ହୋଇଅଛି ।

ନାନା ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସୁଦ୍ଧା ଆପଣ ଯଦି ଏ ଦିଗରେ ଲକ୍ଷ୍ୟ ସ୍ଥିର ରଖି କିଛି ଦିନ ଅଧ୍ୟବସାୟନିରତ ହୁଅନ୍ତି, ତେବେ ପ୍ରଭୁଙ୍କ ଇଚ୍ଛାରେ ଆପଣ ଅଚିରେ କବି-ଶ୍ରୀ-ମଣ୍ଡିତ ହୋଇ ଦେଶଖ୍ୟାତ ହୋଇ ପାରିବେ । ଏହା ମୋର ଅଭ୍ରାନ୍ତ ବିଶ୍ୱାସ ବୋଲି ମନେ ହୁଏ ।

ଦୁଃଖ ଦୈନ୍ୟକୁ ପ୍ରତିକୂଳ ମନେ ନକରି କବିଜୀବନର ଅନୁକୂଳ ଜ୍ଞାନରେ ଏ ପଥରେ ସୋତ୍ସାହ ଅଗ୍ରସର ହେଲେ ସାଫଲ୍ୟ ଲାଭ ସୁନିଶ୍ଚିତ ।

ଏ ଦେଶରେ କବିର ଧୈର୍ଯ୍ୟଚ୍ୟୁତି ଘଟିବା ଅତି ସ୍ୱାଭାବିକ । ସେଥିପାଇଁ ବର୍ତ୍ତମାନ ବା ଭବିଷ୍ୟତରେ କ୍ଷୁଣ୍ଣ ହେବେ ନାହିଁ—ଅନୁରୋଧ ।

ଦୀନବନ୍ଧୁ ଆପଣଙ୍କର ଦୀନ ଜୀବନର ସହାୟ ହେଉନ୍ତୁ—ଏହା ମୋର ତୃପ୍ତ ପ୍ରାଣର ମୁକ୍ତ ବାସନା । ଇତି ।

ବରପାଲି,
୫-୧୧-୩୨

ଆପଣଙ୍କର ଗୁଣମୁଗ୍ଧ
ଶ୍ରୀ ରାଘବ ମିଶ୍ର

# ଅଭିମତ

‘ସୁରଙ୍ଗୀ’ର ପାଣ୍ଡୁଲେଖ୍ୟ ପାଠକରି ମୁଁ ପ୍ରୀତ ହୋଇଅଛି । ରାଧାନାଥ, ଗଙ୍ଗାଧର ଓ ଚିନ୍ତାମଣି କବିତ୍ରୟଙ୍କ ସମ୍ମିଶ୍ରିତ ଶୈଳୀର ସଂଯୋଜନ ସଙ୍ଗେ କବି ସ୍ୱୀୟ ଶୈଳୀର ସ୍ୱାତନ୍ତ୍ର୍ୟ ରକ୍ଷା କରି କାବ୍ୟଟିକୁ ସୁଖପାଠ୍ୟ ତଥା ମନୋହର କରିପାରିଛନ୍ତି । ସମାଜଶିକ୍ଷାର ଦୃଷ୍ଟିଭଙ୍ଗୀରେ ଅନ୍ଧକାର ପରେ ଆଲୋକ ପ୍ରଦର୍ଶନ ଚିନ୍ତାଶୀଳତାର ପରିଚୟ ଦିଏ । ପ୍ରକୃତି ପର୍ଯ୍ୟବେକ୍ଷଣ ଓ ତାର ଯଥାଯଥ ବର୍ଣ୍ଣନରେ ମଧ୍ୟ କବିଙ୍କ କମ୍-ଶକ୍ତିର ପରିଚୟ ମିଳିନଥାଏ । ଊଷା ପ୍ରକୃତିର ମନୋଜ୍ଞ ତଥା ଜୀବନ୍ତ ବର୍ଣ୍ଣନ, ଏହାର ଏକ ଦୃଷ୍ଟାନ୍ତ ସ୍ୱରୂପ ନିଆଯାଇପାରେ । ଏହା ବ୍ୟତୀତ ନାରୀସୁଲଭ ଭାଷା ଗୃହଭୂମିର କୌତୂହଳୋଦ୍ଦୀପକ ସରସ ବର୍ଣ୍ଣନ ସହ କବି ଯେପରି ହସାଇ ପାରିଛନ୍ତି, ସେପରି କବିଜନୋଚିତ ସୂକ୍ଷ୍ମଦୃଷ୍ଟିର କୃତିତ୍ୱ ମଧ୍ୟ ଦେଖାଇ ଦେଇଛନ୍ତି । କାହିଁ କାହିଁ ସୀମିତ ସ୍ଥଳରେ ଉଚ୍ଚ ଭାବସମୂହର ଏକତ୍ରୀକରଣ ତଥା ପ୍ରସ୍ଫୁଟନ ସ୍ଥିତପ୍ରଜ୍ଞ-ଲେଖନୀର ସୂଚନା ଦିଏ । ବିଶେଷତଃ ହାର୍ଦ୍ଦିକ ବ୍ୟାକୁଳତାମୟ ହାହାକାରପୂର୍ଣ୍ଣ ଜନଜୀବନର ସତ୍ୟ-ଜୀବନ୍ତ ଦୁଃଖବାଦର ବର୍ଣ୍ଣନରେ କାବ୍ୟର ରସାନୁଭୂତି ସ୍ପଷ୍ଟ ଓ ସହଜ ହୋଇପାରିଛି । ସୁତରାଂ ରସୋତ୍ତୀର୍ଣ୍ଣ ବିନ୍ୟାସରେ କାବ୍ୟଟି ପ୍ରାୟ ସୁରୁଚିସମ୍ପନ୍ନ । ଅଳ୍ପ କଥାରେ କହିବାକୁ ଗଲେ, କବି ପାଠକଙ୍କୁ ହସାଇ ହସାଇ ଯେପରି ସାମାଜିକ ଶିକ୍ଷା ଦେଇଯାଇଛନ୍ତି, ସେହିପରି ଦୁଃଖବାଦ ବର୍ଣ୍ଣନରେ ମଧ୍ୟ ଜୀବନର ଏକ ବିଶିଷ୍ଟ ଦର୍ଶନଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରି କନ୍ଦାଇ ଦେଇଅଛନ୍ତି । ତଦୁପରି କାବ୍ୟଟିର ଅଧିକାଂଶ ପଦ ସମ୍ଭ୍ରାନ୍ତ କବିପ୍ରତିଭାର ଅଭ୍ରାନ୍ତ ନିର୍ଦ୍ଦେଶ ଦେଇଥାଏ । ସୁତରାଂ କବିଚରିତ୍ରର ବହୁ ଉପାଦାନ ନେଇ ‘ସୁରଙ୍ଗୀ’ ସୁରଙ୍ଗିମା ତଥା ସୁରଞ୍ଜିମା ହୋଇପାରିଅଛି । ଅବଶ୍ୟ ଏହାର ଭାଷାରେ ସ୍ଥଳେ ସ୍ଥଳେ ସମତା ରକ୍ଷା ହୋଇ ପାରିନାହିଁ ଓ କାହିଁ କାହିଁ ବିଷୟବସ୍ତୁର ଆନୟନ କେତେକାଂଶରେ ଅପ୍ରାସଙ୍ଗିକ ମନେ ହୁଏ ।

।

ଆଞ୍ଚଳିକ ଶବ୍ଦର ବହୁଳ ପ୍ରୟୋଗ ସର୍ବଥା ସମୀଚୀନ ହୋଇନାହିଁ ।' ତଥାପି କାବ୍ୟଟିରେ କବିପ୍ରତିଭାର ଯେଉଁ ଅପୂର୍ବ ବିକାଶ ଘଟିଛି, ତାହା ସର୍ବଥା ପ୍ରଶଂସାର୍ହ । ମୁଁ କବିଙ୍କୁ ଆନ୍ତରିକ ସମ୍ବର୍ଦ୍ଧନା ଜଣାଉଛି । ଇତି ।

ବେସିକ୍ ଟ୍ରେନିଂ ସ୍କୁଲ,
ବରଗଡ଼
ତା ୩୦-୮-୫୦

ଶ୍ରୀ କେଶବ ମେହେର

# ସୁରଙ୍ଗୀ*

( ରାଗ—ନଟବାଣୀ )

(୧) ଫୁଲଝର-କୂଳ- ବତ୍ତୀ-କୁଳହାର
ଫଳମୂଳ-ଶାକ- ଶସ୍ୟଶୋଭୀ ଝର;
(୨) ବୁଢ଼ାଡଙ୍ଗରର ଅଙ୍ଗଜା ସୁରଙ୍ଗି,
(୩) ଅଙ୍ଗସଙ୍ଗିନୀ ତୁ ଶବୋପଲ ଅଙ୍ଗୀ !
ଋଷିକୁଲ୍ୟା ସ୍ୱର୍ଣ୍ଣ- ରେଖା କଳନାଦୀ
ସାଲନ୍ଦୀ ବ୍ରାହ୍ମଣୀ ଝୀର ଦନ୍ତା ଆଦି;
ନଦୀ-ଉପନଦୀ- ଇତିହାସେ ନାମ
ବସିନାହିଁ ଯେଣୁ ଭାଗ୍ୟ ତୋର ବାମ ।
(୪) ଢେଁସାଲୀ ଉତ୍ସଲୀ ଭେଡ଼େନ ହରଡ଼
ତୋହଠାରୁ ଅବା କେଉଁ ଗୁଣେ ବଡ଼ !

---

* ସୁରଙ୍ଗୀ—ଫୁଲଝର ରାଜ୍ୟର ପ୍ରଧାନ ନଦୀ ।

(୧) କୂଳବତ୍ତୀ—ନଦୀ ।

(୨) ବୁଢ଼ାଡଙ୍ଗର—ଫୁଲଝର ରାଜ୍ୟ ଅନ୍ତର୍ଗତ 'ଖୁଖାସଲ୍‌ଡ଼ିହି' ଗ୍ରାମର ନୈର୍‌ଋତ କୋଣରେ ଅବସ୍ଥିତ କ୍ଷୁଦ୍ର ପର୍ବତବିଶେଷ ।

(୩) ଅଙ୍ଗ—ମହାନଦୀର ଉପନଦୀବିଶେଷ ।

(୪) ଢେଁସାଲୀ—ଏହି ନଦୀ ଢେଁସ ଜମିଦାରୀ ନିକଟରେ ପ୍ରବାହିତ । ଉତ୍ସଲୀ—ବିଜେପୁର ଜମିଦାରୀର ଉତ୍ସଲ ଗଡ଼ (ଆଧୁନିକ ନାମ ତାଲପଦର) ନିକଟରେ ବହି ଯାଉଥିବା ହେତୁ ଏହି ନଦୀର ନାମ ଉତ୍ସଲୀ ହୋଇଛି । ଭେଡେନ—ଇବନଦୀର ଉପନଦୀ-ବିଶେଷ । ଏହା ମହାନଦୀର ଉତ୍ତରରେ ପ୍ରବାହିତ । ହରଡ଼—ସମ୍ବଲପୁର ସହର ନିକଟରେ ପୂର୍ବଭାଗରେ ପ୍ରବାହିତ ।

ତାଙ୍କ ନାମ ଆଜ    ଲୋକରେ ବନ୍ଦିତ,
(୧) ଉତ୍କଳ-ଲକ୍ଷ୍ମୀର    ହୋଇଛି ସଙ୍ଗୀତ ।

ତୋ ତୀର ରଜତ    ତୁଙ୍ଗ ଶୈଳରାଜ
(୨) ଲୁପ୍ତଗିରି ଠାରୁ    ଲୁପ୍ତନାମା ଆଜ ।

ଆନ କଥା ଥାଉ    ବୁଢ଼ାରଜା ଦେଖ
ଉତ୍କଳ ସାହିତ୍ୟେ    ହୋଇଛି ଉଲ୍ଲେଖ ।

(୩) ବୁଢ଼ାରଜା ଅଜା    ଭଲ ଭୃଙ୍ଗରାଜ
ତା ନାମରେ ଖଡ଼    ପଡ଼ନାହିଁ ଆଜ ।

ଯାହାହେଉ ନଦ,    ସମସ୍ତ ଅଛି ତ,
ହୋଇନାହିଁ ବିଧି    ବିଧାନ ଅଜ୍ଞାତ ।

ସମସ୍ତ ହୀରାକୁ    କରିଥାଏ ଜାଗ୍ରା,
ସମସ୍ତେ ରାକ୍ଷସୀ    ବୋଲିଏ ଇନ୍ଦିରା ।

ସମସ୍ତ ତ' ତୋତେ    ଗଢ଼ିଛି ସରିତ
ସମସ୍ତଙ୍କୁ ତୋର    ଡାକିବା ବିହିତ ।

ବର୍ତ୍ତମାନ ଯେବେ    ଲୋକେ ତୁ ଅଚିହ୍ନା
ହେଲୁ ତାର ଦେଶ    ପରିଚିତ ସିନା ।

ଦେଶର ସୁଦଶା    ଆସୁ କେତେ କବି
* ଚିତ୍ରିବେ ତୋହର    ମନୋହର ଛବି ।

ବନ୍ଧୁ ପାଦପଦ୍ମେ    ଢାଳ ଅଶ୍ରୁ ଝର
ଉତ୍କଳେ ଭସାଇ    ଆଶୁ ଫୁଲଝର ।

କେତେ ରାଧାନାଥ    ମେହେର-ମିହିର
ନବ ଅବତାରେ    ଚିତ୍ରିବେ ତୋ ତୀର ।

---

(୧) ଉତ୍କଳଲକ୍ଷ୍ମୀ—୰ କବିବର ଗଙ୍ଗାଧର ମେହେରଙ୍କ ପ୍ରଣୀତ କାବ୍ୟବିଶେଷ ।

(୨) ଲୁପ୍ତଗିରି—ସମୁଦ୍ର ଗର୍ଭସ୍ଥିତ ମୈନାକ ପର୍ବତ । ବୁଢ଼ାରଜା—ସମ୍ବଲପୁର ସହରର ରେଲଷ୍ଟେସନ ନିକଟବର୍ତ୍ତୀ ପର୍ବତ ।

(୩) ଭୃଙ୍ଗରାଜ—ସ୍ୱନାମପ୍ରସିଦ୍ଧ ପର୍ବତବିଶେଷ । ଏହା ସୁରଙ୍ଗୀର ପ୍ରଧାନ ଗଣ୍ଡ ଦେବଦର୍ହର ଉତ୍ତର ତଟରେ ଅବସ୍ଥିତ ।

* ପର୍ବତମାଳା ବେଷ୍ଟିତ ଦେବଦର୍ହର ରମଣୀୟ ଦୃଶ୍ୟ ପ୍ରତି ଲକ୍ଷ୍ୟ ।

(୧) ଲେଖନୀ-ଜନକ    ବଳେ ଚନ୍ଦ୍ରାମଣି
ଫେଣ୍ଟାଇବେ ତୋର    ବକ୍ଷେ ରତ୍ନଖଣି ।
(୨) ମୃତ୍ୟୁଞ୍ଜୟ ସମ    କେତେ ଗୁଣଗ୍ରାହୀ
(୩) ମୃତ୍ୟୁଞ୍ଜୟ ହେବେ    ତୋର ଗୀତ ଗାଇ ।
'ତୀର୍ଥ' ଆଖ୍ୟା ଦେଇ    ସାଧୁ ଭକ୍ତଜନ
ତୋ ଜଳେ କରିବେ    ମସ୍ତକ ମଜ୍ଜନ ।
* ଯେଣୁ ତୋର ଗୁଣ    ପାତକୀନରସ୍ତୁ
ହୁଅନ୍ତି ତୋ ନୀର-    ପାନେ ନିରାମୟ ।
ଋଷି ସତ୍ୟ ଶାନ୍ତି    ଅହିଂସା ଧରମ
ହେବୁ କବି-ଯୋଗୀ-    ତପୀଙ୍କ ଆଶ୍ରମ ।
ସୂକ୍ଷ୍ମଦୃଷ୍ଟି-ନେତ୍ରେ    ତଥାପି ତୁ ଚର
ଅମସୃଣ ତୁ    ପ୍ରକୃତି-ଶରୀର ।
ନନ୍ଦକୁଳେଶ୍ୱରୀ    ରୂପେ ଗୁଣେ ସୁଦ୍ଧା
ଈଶ୍ୱର ହୃଦୟା    ସ୍ୱଭାବ ଶୁଭ୍ରା ।
ପାଳିବାକୁ ତୋର    ଆଶ୍ରିତ ଜୀବନ,
ଦସ୍ୟୁରୂପେ ଢାଳି    ଦେଉଛୁ ଜୀବନ ।

ଚତୁଷ୍ପଦ ଅଷ୍ଟ-    ପାଦ ଷଟ୍ପଦ
ଶତପାଦକାଦି    ଦ୍ୱିପଦ ନିଷ୍ପଦ ।

ପ୍ରାଣ ରଖିଛନ୍ତି    ନାନା ଜାତି ପ୍ରାଣୀ
ହର୍ଷେ ଖାଇପିଇ    ତୋର ଦାନାପାଣି ।

ତୋର କ୍ଷୀର ଖାଇ    ବଢ଼ି ତୋର କୋଳେ
ମୁଁ ମଧ୍ୟ ବଞ୍ଚିଛି    ତୋର ସ୍ନେହ ଖେଳେ ।

ଆଜନ୍ମ ଦୁଃଖୀ ମୁଁ    ଅତି ଦୀନହୀନ,
ଅଟଇ ଆବାଲ୍ୟ    ମାତୃପିତୃହୀନ ।
ରକତଶୋଷିଣୀ    ଚିନ୍ତା-ନିଶାଚରୀ
ଦିନୁଦିନ ମୋତେ    ଦେଉଅଛି ତରି ।

(୧) ଚନ୍ଦ୍ରାମଣି—ସୁନାମଧନ୍ୟ କବି ଚନ୍ଦ୍ରାମଣି ମହାନ୍ତି ।
(୨) ବାଣୀଭୂଷଣ ୰ ମୃତ୍ୟୁଞ୍ଜୟ ରଥ । (୩) ମୃତ୍ୟୁଞ୍ଜୟ—ଅମର ।
* ସୁରଙ୍ଗୀ-ବର୍ତ୍ତିତ ସ୍ଥଳ 'ଦେବଦର୍ହ'ର ଜଳବାୟୁ ଅତି ସ୍ୱାସ୍ଥ୍ୟପ୍ରଦ ।

ଦୁଃଖିଶ୍ରେଷ୍ଠ ମଣି ଭୁବନ ସମ୍ରାଟ
ଦୁଃଖସାମ୍ରାଜ୍ୟ ମୋତେ ଦେଇଛନ୍ତି ପାଟ ।
(୧) ଶତ୍ରୁଙ୍କ ଜନନୀ, 'ସୁର୍ଙ୍ଗିପାଲି' ନାମେ
ଶୈଶବେ ଥିଲି ତୋ ତଟବର୍ତ୍ତୀ ଗ୍ରାମେ ?
ବାଲ୍ୟ ସ୍ନେହମୟୀ ଜନନୀ ହରାଇ
ତୁ ଜାଣୁ, ଏ ପ୍ରାଣ ଅଛି ଯାହା ପାଇ ।
ତୁଇଁ ନ ଥିବାରୁ ଏ ଯାଏ ମରଣ,
କେତେ କଥା ମା ଗୋ, ହେଉଛି ସ୍ମରଣ ।
ତୋ ଦର୍ଶନେ ମୋର ବାଲ୍ୟସ୍ମୃତି ଛବି
ଅଶ୍ରୁରୂପେ ଆଜ ଯାଉଅଛି ସ୍ରବି ।
ତୋ ସରୁ ସୈକତେ ବୁଲି ନାନା ଖେଳେ
ଦିନ କଟାଇଛି ବାଲ୍ୟ ସଙ୍ଗୀମେଳେ ।
ପ୍ରାବୃଟ ପ୍ରାରମ୍ଭ ସମୟରେ ଦିନେ
ଖେଳୁଥିଲୁଁ ଶିଶୁ- ଦଳ ତୋ ପୁଳିନେ ।
ବାଲି ଘରଦ୍ୱାର ବାଲି ଜମିବାଡ଼ି
ଗଢ଼ିଥିଲୁଁ ମାଟି- କାଠି ହଳ ଗାଡ଼ି ।
କାହା ଘରେ ଅନ୍ୟ ଜଣକର ପାଦ
ପଡ଼ିଗଲେ କେତେ ଉଠୁଥିଲା ବାଦ ।
କ୍ଷଣସ୍ଥାୟୀ ଖେଳ- ଜଞ୍ଜାଳରେ ପଡ଼ି
ଅହଂକାରେ ସବେ ଯାଉଥିଲୁଁ ରଡ଼ି ।
ଏ ସମୟେ ତୋର ସ୍ରୋତଟିଏ ଆସି
ଜମିବାଡ଼ି ଆମ୍ଭ ସବୁ ଦେଲା ଗ୍ରାସି ।
ପଳାଇଲୁଁ ତହୁଁ ଛାଡ଼ି ଘରଦ୍ୱାର
ପିନ୍ଧା ବାସମାନ ଧରି ଯେ ଯାହାର ।
ବୁଝିଲି ମୁଁ ଏବେ ସଂସାରର ସର୍ବ
ଭଜୁଛି ସେପରି ଦିନେ କାଳଗର୍ଭ ।

(୧) ସୁର୍ଙ୍ଗିପାଲି—ଏହି ଗ୍ରାମ ସମ୍ବଲପୁର ଜିଲ୍ଲାନ୍ତର୍ଗତ 'ବରପଲି' ଥାନାରେ ଅବସ୍ଥିତ। ଲେଖକର ବାଲ୍ୟଜୀବନଟି ଉକ୍ତ ଗ୍ରାମରେ ଅତିବାହିତ ହୋଇଅଛି ।

ସାରଶୂନ୍ୟ ଜ୍ଞାନ    ଧ୍ୟାନ ଅଭିମାନ
ପଦ ଆଡ଼ମ୍ବର    ସମ୍ପଦ ସମ୍ମାନ
ହସ କଉତୁକ    ଖେଳ ନୃତ୍ୟ ଗୀତ
ନ ରହିବ କିଛି    ଧରମ ବ୍ୟତୀତ ।

କିଛି କ୍ଷଣ ପରେ    ସେ ଦିନ ପ୍ରଦୋଷେ
ଦିଗ୍‌ବିଦିଗ ବ୍ୟାପି    ଗରଜି ସରୋଷେ ।
ନିସ୍ତବ୍ଧ ଗିରିକି    କରି ଉଲ୍ଲଙ୍ଘନ
ନଭେ ସିନ୍ଧୁଭୁଲି    ହେଲା ଘନାଘନ ।
ଟପ ଟପ ଧାରା    ଆଗେ ଆଗେ ଧାଇଁ
ଛପ ଛପ ବୋଲି    ଗଲା ଚମକାଇ ।
ବୈଦ୍ୟୁତିକ-ଶକ୍ତି    ଜ୍ୟୋତି ପ୍ରକଟନେ
ଖେଳାଇଲା କ୍ଷଣ-    ପ୍ରଭା କ୍ଷଣେ କ୍ଷଣେ ।
ପତିତ ପୃଷନ୍ତି    ପ୍ରତି ଦେଲେ ଦୃଷ୍ଟି
ବୋଧହୁଏ ସତେ    କିବା ମୁକ୍ତା ବୃଷ୍ଟି ।
ଅବା ପ୍ରକୃତିର    ପାଦେ ନବଘନ
ଅର୍ପେ ଘନ ପୁଷ୍ପ-    ଉପଢଉକନ ।
ସ୍ୱପ୍ନ-ଶାନ୍ତ-ନାବେ    ଜୀବ ଯଥା ଭସି
ଜାଗରଣେ ତନ୍ଦ୍ରା-    ସ୍ରୋତେ ପଡ଼େ ଖସି ।
ତେହ୍ନେ ସେହି ଶୋଭା    ହରାଇ କ୍ଷଣକେ
ମୁଦିହେଲା ନେତ୍ର    ଅନ୍ଧାର-ପଲକେ ।
ଘନ ନିର୍ଘୋଷରେ    କମ୍ପିଲା ଅବନୀ
ଦେବାଳୟ-ମୁଖେ    ଦେଇ ପ୍ରତିଧ୍ୱନି ।
(୧) ବଣ୍ୟ ଜୀବଜନ୍ତୁ    ଉଡ଼ି ରଙ୍ଗି ଧାଇଁ
ଇତସ୍ତତଃ ହେଲେ    ଆଶ୍ରୟ ଅନାଇଁ ।
ନତ ବନ୍ଦଶିରେ    ଗୋଷ୍ଠୁ ଗୋ ସହିତ
ଶାଳା ଅଭିମୁଖେ    କଲେ ବ୍ୟଗ୍ରଗତି ।

(୧) ରଙ୍ଗିବା—ଗ୍ରୁଡରେ ଭର୍‌ଦେଇ ଗୁଳିବା ।

ସର୍ପେ ତେଜ ବଳ- ଶାଳ ହୁଙ୍କା ଗର୍ତ୍ତି
ତରୁକୋଡ଼େ ଯାଇ ହେଲେ ଉପଗତ ।
ଯହିଁ ତୃଣାବୃତ ଗନ୍ଧ ଜଳକୁଣ୍ଡ
ମଶାବୃନ୍ଦ ତହିଁ ହୋଇଥିଲେ ଝୁଣ୍ଡ ।
ବର୍ଷା ଯୋଗେ ଉଡ଼ି ଆସି ଗୋରୁଶାଳେ
ଆଶ୍ରା ନେଲେ ଗୁପ୍ତ- ତଳ ଲମ୍ବୀ ପାଳେ ।
ଗୋରୁଦେହେ ଭେଦ କଲେ ସୂକ୍ଷ୍ମ ଶୁଣ୍ଢ
ଛଡ଼ିଲେ ଗୋରୁଏ ଶୂଳ ପୁଚ୍ଛ ମୁଣ୍ଡ ।
ଛିନ୍ନ-ପୁଚ୍ଛ ଯେହୁ ମଶକ-ପୀଡ଼ନେ
(୧) ଇତସ୍ତତଃ ହୁଏ ଚର୍ମ-ବିକମ୍ପନେ ।
ପରେ ପୀଡ଼ ନଜ ଜୀବନ ଶୀତଳ
କରିବା ନୀତିଟି ଦିଏ ବିଷଫଳ ।
କୃତଘ୍ନ ମଶକେ ସେହି ଗୋରୁଶାଳେ
ଛଟପଟ ହେଲେ ପଡ଼ି ଲୁତା ଜାଲେ ।

ବେଳୁଁ ବେଳ ଘନ ବଢ଼ାଇ ଆସାର
କରିଦେଲା ଜଳ ସ୍ଥଳ ଏକାକାର ।
(୨) ଦେଉଳୁ ବାହାରି ସାନ୍ଧ୍ୟ ଶଙ୍ଖନାଦ
ଜଣାଇଲା ଲୋକେ ବର୍ଷା ଧନ୍ୟବାଦ ।
ତମୋମୟୀ ସନ୍ଧ୍ୟା 'ବନ୍ଧୁର ଅୟନେ,
ଗାଇଲା ସଙ୍ଗୀତ କଲକଲ ସ୍ୱନେ ।
ପ୍ରକୃତି-ବାଗ୍‌ଦେବୀ- ବଲ୍ଲକୀ ଝଙ୍କାର
ଉଠିଲା ବଚନ ନୈଶିକ-ଝିଙ୍କାର ।

(୧) ଚର୍ମ-ବିକମ୍ପନ ବା ଚର୍ମ-କମ୍ପନ—ଦଂଶନଶୀଳ କୀଟପତଙ୍ଗର ଉପଦ୍ରବ ଗୋରୁ ମହିଷ ପ୍ରଭୃତି କେତେକ ଚତୁଷ୍ପଦ ପ୍ରାଣୀଙ୍କର ଆତ୍ମରକ୍ଷା ପ୍ରତକ୍ରିୟାବିଶେଷ ।

(୨) ସୁର୍ଙ୍ଗିପାଲିରେ କୌଣସି ମନ୍ଦିର ବା ଦେବାଳୟ ନାହିଁ । ଉକ୍ତ ଗ୍ରାମର ଅ ନିକଟରେ ପଶ୍ଚିମ ପଟରେ 'ଗଡ଼ପଟଣା' ନାମକ ଗୋଟିଏ ଗ୍ରାମ ଅଛି । ସେହି ଗ୍ରାମସ୍ଥି ଶିବମନ୍ଦିର ଓ ବିଷ୍ଣୁମନ୍ଦିରର ଶଙ୍ଖ-ଘଣ୍ଟନାଦ ସୁର୍ଙ୍ଗିପାଲିକୁ ସ୍ପଷ୍ଟ ଶୁଣାଯାଏ ।

ନାନା ଜାତି ଭେକ ପ୍ରତିଯୋଗୀ-ରବେ
ହର୍ଷେ ଯୋଗଦେଲେ ବାର୍ଷିକ ଉତ୍ସବେ ।
ଚଞ୍ଚଳା-ନର୍ତ୍ତନ ଘଡ଼ଘଡ଼ି ବାଦ୍ୟ
ଦର୍ଶନେ ଶ୍ରବଣେ ପ୍ରବାସୀଏ ବାଧ୍ୟ ।
ଛିନ୍ନାବୃତ ବାସେ ବସି କାହା କ୍ଳାନ୍ତ
ଶମ୍ପା ଗତି ଦେଖି କମ୍ପାଇଲେ ଗାତ୍ର ।
ସାଭଗ୍ର ଭାଷାରେ କେବଣ ବନତା
ବଖାଣେ ସ୍ୱାମୀର ଘରିଘସୂଚିତା ।
ପ୍ରବୋଧେ ତା ଚିତ୍ତ ବନ୍ଦ କର ହଳ
ଗୃହାଚ୍ଛାଦେ ପ୍ରାଣୁଁ ଲଗିବ ଚଞ୍ଚଳ ।
ଅନେକଙ୍କ ଘରେ ଛଦଭେଦୀ ବାରି
ହେଲା ନିଦ୍ରିତଙ୍କ ଦୁର୍ଜ୍ଜୟ ଭଗାରି ।
ଗଳିତ ସଳିଳ କରୁ କରୁ ଦୂର
ଆପାଦ ପ୍ଳାବିତ ହେଲାଣି କା' ପୁର ।
ବଳାତ୍କାରେ ଜଳ ହେବାରୁ କୁଣିଆଁ
ଚୁହ୍ଲି-ଘର ଗୁଡ଼ି ପଳାଇଲା ନିଆଁ ।
କାହିଁ ମୂଳସିକ୍ତ ଜର୍ଜ୍ଜ-ଭିତ୍ତି ପାତ
ଦରିଦ୍ର ହୃଦୟେ କରୁଛି ଆଘାତ ।
ଧ୍ୱସ୍ତ ଗବାକ୍ଷୟେ ଶ୍ରୁତି ଦେଲେ ବାରେ
ପ୍ରାଣ ସ୍ତବ୍ଧ ହମ୍ବା- ରବ ଶୁଣିବାରେ ।
ଖପରଲି-ଗୃହ ପ୍ରାନ୍ତ ପାଳ ଧାର
ବିଦ୍ୟୁତ୍ତେଜେ ଦିଶେ ଯେସନ୍ତେ ରୌପ୍ୟ ତାର ।
ବୃଷ୍ଟିଜଳ ଧାରେ ଗ୍ରାମ୍ୟଦାଣ୍ଡ ଗଳି
ହୋଇଗଲା କ୍ଷୁଦ୍ର କ୍ଷୁଦ୍ର ନାଳି ଭଳି ।
କୂପ ଉପକୂଳ୍ପା ବିଲ ଉଚ୍ଛଳିତ
ଆପ ତୋ ଉପରେ ହେବାରୁ ପତିତ ।
ସ୍ରୋତ ଆକ୍ରନ୍ତନେ ତଟବର୍ତ୍ତୀ ତରୁ
ଉପାଡ଼ିଲୁ ନଦି, ସବେସେ ମୂଳରୁ ।
ଗ୍ରୀଷ୍ମେ ସେମାନେ ଯେ ସହାନୁଭୂତି
ଦେଖନ ରମ୍ୟ ନବ ପଲ୍ଲବିତ ମୂର୍ତ୍ତି ।

ଦେବଦହ ବକ୍ଷେ ଶୁଭ୍ର ସୁବିମଳ
ବୁଦ୍‌ବୁଦ ଜନ୍ମାଇ ପ୍ରପତିତ ଜଳ ।
ଶୀକର ଅପ୍ରଷ୍ଟୀ- କୃତ ଇନ୍ଦ୍ରଧନୁ
ସୃଜି ବିଶୋଭିତ କରେ ତୋର ତନୁ ।
କୁହୁଣେଲ, ‘ଭଡ଼େ- କଁଠା, ସେମଳିଆ,
କାଉଁଶ, କଠଙ୍ଗୀ, ବେଢଣ, ନଳିଆ,
ତୋ ପୟରେ ଢାଳ ଢାଅନ୍ତେ ଜୀବନ
ଏ ଉପନଦୀଏ, ଗୋ ନଦୀରତନ !
ଉଚ୍ଛ୍ୱସିଲା ତୋର ଉଦାର ହୃଦୟ
ଗୃହୁଁ ଗୃହୁଁ କ୍ଷଣେ ମାଡ଼ି କୂଳଦ୍ୱୟ ।
ଶିର-ଆବର୍ଜନା- ପନ୍ସ ଜାମୁଫଳ
ଉପହାର ଘେନ ଧାଇଁଲୁ ଚଞ୍ଚଳ ।
(୧) ସ୍ରୋତ ଉଦ୍ଭାସିତ ରକ୍ତକୀଟାବଳୀ
(୨) ଦଶିଲେ ପ୍ରବାଳ ସ୍ୱସଫିଠା ଭଳ ।
ଶ୍ରସମାନ କାନ୍ତି- ବିଜଡ଼ିତ ଫଣୀ
ଦେହଲେ ତୋର ବକ୍ଷ- ବିଶୋଭିତ ମଣି ।
(୩) ଉତ୍ତରଳ ଅଙ୍ଗ ଲଙ୍ଘି ପଉଗଣ୍ଡେ,
ଚୁମ୍ବ ଦେଇ ଦେଇ ଚୋ ମୁହାଣି-ଗଣ୍ଡେ ।
ସେ କାଳରେ ଡାକୁ- ଥିଲା କେକା ସ୍ୱନେ
ଏକାନ୍ତେ ବିଳସି- ବାକୁ ଏକାସନେ ।
ଏକେ ଯଉବନ- ଭରା ତୋ ହୃଦୟ,
ଦୁଜେ ଘନରସ- ଉଚ୍ଛୁଳା ସମୟ ।
(୪) ନମାନ ଦୁଃଶିଳା ବିଟପୀଙ୍କ ବାଧା
(୫) ବନମାଳୀ ସଙ୍ଗେ ମିଶିଗଲୁ ରାଧା ।
ଦେଖି ତୋର ପ୍ରେମ- ତନ୍ମୟୀ-ମୁରତି
ତୋ ଶିର ପାଳତ ପକ୍ଷୁପକ୍ଷିତତି ।

---

(୧) ରକ୍ତକୀଟ—ସାଧବବୋହୂ ପୋକ । (୨) ପ୍ରବାଳ—ପୋହଳା । (୩) ଅ
ମହାନଦୀର ଉପନଦୀବିଶେଷ । (୪) ଦୁଃଶିଳା—ନଦୀମଧ୍ୟରେ ଥିବା ଉଚ୍ଚ ଙ୍ଗ
ଦୁଷ୍ଟଚରିତ୍ରା ସ୍ତ୍ରୀ । (୫) ବନମାଳୀ—ଶ୍ରୀକୃଷ୍ଣ, ନଦୀ । ଅଙ୍ଗ—ଶରୀର, ନଦୀବି

କେହି ବା ମାରିବେ କେ' ବା ହର୍ଷରିବେ
ତୋ ବନ୍ଦନା ଗୀତ ଗାଇଲେ ସରିବେ ।
ତଥାପି, ମୁଁ ମଧ୍ୟ ହୋଇ ବଦ୍ଧାଞ୍ଜଳି
ମନ୍ତ୍ରରୂପେ ଜପି ତୋର ଗୁଣାବଳି,
ହୃଦୟ ବେଦନା ଜଣାଇଲି ମୋର
(୧) କେଜାଣି ତୋ ମନେ ଥିବ କି ନା ସୋର !
ନପାଇଲି ଯେଣୁ ତୋର ପ୍ରତିଭାଷା
ବାହୁଡ଼ିଲି ପୁରେ ଘେନି ଖଣ୍ଡ ଆଶା ।
(୨) ମାନସରେ ରଖି ଭକ୍ତି-ପ୍ରୀତି-ନିଷ୍ଠା
ତୋ "ଧବଳେଶ୍ୱର- ମନ୍ଦିର" ପ୍ରତିଷ୍ଠା—
ମହୋତ୍ସବ-ଦୃଶ୍ୟ ଦର୍ଶନୋଦ୍ଦେଶ୍ୟରେ
(୩) ଆଜିଥରେ ଆସି ଥିଲି ଚଇତରେ ।
ଯେକାଳେ ଏ ସ୍ଥଳେ ହେଲି ଉପସ୍ଥିତ
ହୋଇ ଥିଲେଣି ତ ରବି ଅସ୍ତମିତ ।
ଚବଣ-ପ୍ରହଣ୍ଟ- ନାମ-ସଂକୀର୍ତ୍ତନ
ମୋହୁଥିଲି ଦୂର ଦର୍ଶକର ମନ ।
ମାତ୍ର ନିକଟକୁ ଗଲେ ପ୍ରେମ ଭକ୍ତ
ଦୂର ହୁଏ; ଜଣେ ବିକଟ ବିରକ୍ତ ।
ଉଦ୍ଧତ ନର୍ତ୍ତନ ଊର୍ଦ୍ଧ୍ୱ ଉଲ୍ଲମ୍ଫନ
ମୁଖଭଙ୍ଗୀ-ଛଳ- ଭକ୍ତି-ପ୍ରଦର୍ଶନ ।
ବକୃତାଭିନୟ କଟାକ୍ଷ-ଶୃଙ୍ଖଳା
ହୋଇଥିଲା ଯେଣୁ ପ୍ରେମ ବାହାଦୁର ।
ଆଗୁଣ୍ଠାଳ ବସ୍ତ୍ର ଯେଉଁ ସଙ୍କୀର୍ତ୍ତନେ
"ସର୍ବେ ଏକ" ଏହି ଭାବ ପ୍ରଦର୍ଶନେ,
ନାଚୁଥିଲେ ଯେହୁ ହରିନାମ ଗାଇ
କାହିଁ ସେ ପ୍ରେମୀ, ସେ ପ୍ରେମ ଆଜ କାହିଁ ?

(୧) ସୋର—ସ୍ମରଣ ଶବ୍ଦଜ । (୨) ଏହି ମନ୍ଦିର 'ଦେବଦର୍ହି'ର ପଶ୍ଚିମ ତଟରେ ବାଘେନ ପର୍ବତର ପାଦଦେଶରେ ପ୍ରତିଷ୍ଠିତ । (୩) ତା ୨୭।୩।୧୯୩୧ ଇସବୀର ଘଟଣାବଶେଷ ।

ଯେଉଁ ସଙ୍କୀର୍ତ୍ତନେ    ଗୌରାଙ୍ଗ ମଣ୍ଡଳ
ଧୂସରିତ ଥିଲା    ମାଖି' ପଦଧୂଳି ।
ସେ କୀର୍ତ୍ତନେ ଆଜି    ପାଟଫୁଲି ପାଗ
ନ ପିନ୍ଧିଲେ କାହିଁ    ଭକ୍ତଙ୍କ ସରାଗ ?
ସଙ୍କୀର୍ତ୍ତନେ ଯେଉଁ    ତୁଳସୀ ପତର
ଥିଲା ନିମନ୍ତ୍ରଣ-    ଚାହିଁ ଭକତର,
ତା ବଦଳେ ଆଜି    ବିଂଶ ତ୍ରିଂଶ ଟଙ୍କା
ଟୀକା ନ ଛୁଇଁଲେ    ଭକ୍ତ ମୁହଁ ବଙ୍କା ।
ମଣ୍ଡଳୀରେ ଭକ୍ତ    ନଦେଇଜଣୁ ଛୁଡ଼ା
ଖଞ୍ଜା ଲଗେ ଆଗେ    ଗଞ୍ଜା ପାନ ବଡ଼ା ।
ସୁରଙ୍ଗି, ଯାହାର    ନାହିଁ ଧର୍ମଲଜ୍ଜା
ସେ ଦେଖୁ କୀର୍ତ୍ତନେ    ନବ୍ୟ ଭକ୍ତ ମଜା ।

ଗୁଡ଼ବାଟ ଠାରୁ    ଗୁଳବାଟ ଯାଏ
ଦୋକାନ ପସରା    ବସି ଶୋଭାପାଏ ।
ଗମ୍ଭୀର ନିର୍ଘୋଷେ    ଗର୍ଜୁଛି ବଜାର
ଆସିଛନ୍ତି ଲୋକ    ହଜାର ହଜାର ।
ବିଚିତ୍ର ବିଜୁଳି-    ବତି ଲାଗି ତାରେ
ରଞ୍ଜିଦେଲା ସ୍ଥଳ    ରଙ୍ଗିମା ପ୍ରଭାରେ ।
(୧) ବାଷ୍ପବତୀ ଦୋଳ-    ଦୀପ୍ତି କାଚଦୀପ
ଶୋଭିଲେ ଦୋକାନ    ପସରା ସମୀପ ।
ଥରେ ଥରେ ଜଳି    'ଚନ୍ଦର ଉଦଆ
ଦର୍ଶକଙ୍କୁ କରି-    ଦିଏ ହଲଦିଆ ।
ଭାସଇ ବିଚିତ୍ର    ଫାନସ ବହୁଡ଼
ତାରକତ ନଭେ    ଊର୍ଦ୍ଧ୍ୱକରେ ଉଡ଼ ।
ତାବ୍ରତସ ବାଜି    ସନ ସନ ଶବ୍ଦେ
ମର୍ତ୍ତ୍ୟ-ଉଲ୍‌କା ସମ    ଉଠେ ବିଷ୍ଣୁପଦେ ।

(୧) ଦୋଳଦୀପ୍ତି—ପେଟ୍ରୋମାକ୍ସ ଲାଇଟ୍ ।

ଫୁଟି ବକରଣ କରେ ଅଗ୍ନି-ଦୃଶ୍ୟ
କ୍ରମେ ଖସି ପୁଣି ହୁଅଇ ଅଦୃଶ୍ୟ ।
କେତେ ଲୋକ କର ମୁହଁଚହ୍ନା ଛଳ
(୧) ଗୃହଦ୍ୟୁତି ହସ୍ତ- ଦୀପିକାର କଳ ।

(୨) କାନ୍ତ-ବ୍ୟୂହ ପର ଗୁହ୍ୟପ୍ରଦୀପକ
କରନ୍ତି ପାଦପ ଡାଳେ ଜକଜକ ।
(୩) ଦାନୁଡଙ୍କଚଡ଼ିକ ଲଙ୍ଘି ସୁଧାକର
ଢାଳିଦେଲେ ଜଳେ ନୂଳେ ସୁଧା-କର ।

ଦେବଦହ ବକ୍ଷେ ପଡ଼ି ଚନ୍ଦ୍ରକାନ୍ତ
(୪) ଝଟକଲା ଲହରୀ ଯେହ୍ନେ ଚନ୍ଦ୍ରକାନ୍ତ ।
(୫) ଭତା ଡଙ୍ଗରର ରଙ୍ଗ ଦାବାନଳ
କରିଦେଲା ଘନ ଗହନ ଉଜ୍ଜ୍ୱଳ ।

ଆଲୋକ ଉତ୍ସଙ୍ଗେ ଖେଳିଲା ଆଲୋକ
ସତେ କି ସ୍ଥାନଟି ଆଲୋକର ଲୋକ ।
ମେଳିଛି ପ୍ରକୃତି ମର୍ତ୍ତ୍ୟ-ଅପସରୀ
ଅବା ଅମାର୍ତ୍ତ୍ୟକ ଆଲୋକ-ପସରା ।

କି ଧବଳେଶ୍ୱର ପ୍ରଭୁଙ୍କ ଚରଣ
ଅର୍ଚ୍ଚନା ଉଦ୍ଦେଶ୍ୟେ ଦିବିଷଦଗଣ
ଅମରାବତୀକି ତେଜି ଦେବଦହେ
କ୍ରୀଡ଼ା କରୁଛନ୍ତି ଆଲୋକ-ବିଗ୍ରହେ ।

(୬) ରାଜେନ୍ଦ୍ର ଲାଲଙ୍କ ଯଶୋକୀର୍ତ୍ତିରାଜି
ଆଲୋକ ରୂପରେ ଦେବ୍‌ଦହେ ବିରାଜି,
କରୁଛନ୍ତି କିବା ନାମ-ସଂକୀର୍ତ୍ତନ
ଛଳେ ରାଜେନ୍ଦ୍ରଙ୍କ ମହିମା କୀର୍ତ୍ତନ ।

---

(୧) ହସ୍ତଦୀପିକା—ଟର୍ଚ୍ଚଲାଇଟ୍ । (୨) ଗୁହ୍ୟ ପ୍ରଦୀପକ—ଜୁଳୁଜୁଳିଆ ।
(୩) ଦାନୁଡଚଡ଼ି—ସ୍ୱନାମପ୍ରସିଦ୍ଧ ପର୍ବତବିଶେଷ । (୪) ଚନ୍ଦ୍ରକାନ୍ତ—ବିଶୁଦ୍ଧ ରୁପା ।
(୫) ସ୍ୱନାମପ୍ରସିଦ୍ଧ ପର୍ବତବିଶେଷ । ଏହା ଭତାଦହାର ଦକ୍ଷିଣ ପଟରେ ଅବସ୍ଥିତ ।
(୬) ରାଜେନ୍ଦ୍ର ଲାଲ—ଜମିଦାର ସାହେବ (ବୋଡ଼ାସମ୍ବର) ଶ୍ରୀ ଶ୍ରୀ ରାଜେନ୍ଦ୍ରଲାଲ ସିଂହ ।

ଲଗିଲା ସଙ୍ଗୀତ ନାଟ୍ୟ'ସ୍ଥାନେ ସ୍ଥାନେ,
ଅଭିମାନଭରା ନୃତ୍ୟ-ବାଦ୍ୟ-ଗାନେ ।
ଢୋଲକ ମର୍ଦ୍ଦଳ କରତାଳୀ କଣୀ
(୧) କଳସ୍ୱନ ଶ୍ରୋତା- ମନ ନେଲେ କଣି ।

କଏ ରାମଚନ୍ଦ୍ର କଏ ହନୁମାନ
(୨) କେ ବା ଦଶକନ୍ଧ କେହୁ ସତ୍ୟବାନ,
କଏ ମନ୍ଦୋଦରୀ କଏ ବଇଦେହୀ
କଏ ବା ସାବିତ୍ରୀ ପ୍ରତିରୂପ ନେଇ;

ଅଭିନେତୃଗଣ ରଙ୍ଗମଞ୍ଚ ମଧ୍ୟେ
ଭାଷା ବୃତ୍ତି ଭଙ୍ଗୀ ରଖି ଗଦ୍ୟେ ପଦ୍ୟେ,
ଦେଖାନ୍ତି କୃତିତ୍ୱ ଯୋଗ୍ୟତାନୁଭବ
ଫୁଟି ପଡୁଥାଏ ପ୍ରତିଯୋଗୀ ଭାବ ।

ଏହିପରି ସିନା ଭବ-ରଙ୍ଗମଞ୍ଚେ
ବହୁତ ଅନେକେ ଅସାର ପ୍ରପଞ୍ଚେ ।
ଅହଂକାର-ନେଶେ ଆତ୍ମ-ସମୁଚ୍ଚତା
ଦେଖୁଛନ୍ତି କେ' ଏଡ଼ ସାମ୍ୟ ସୁହୃଦତା ।

ଅଢ଼ାଇଦିନଆଁ ଉଚ୍ଚପଦ ପାଇ
ପ୍ରତାପେ କେ ହଏ ଦୁନିଆ କମ୍ପାଇ ।
କେ ମଣେ ନିଜକୁ ରାଜରାଜେଶ୍ୱର
ନିଜେ ହର୍ତ୍ତାକର୍ତ୍ତା ତା ରାଜ୍ୟ ଦେଶର ।

ସାଧନ ଶୋଧନ ନମାନେ ଯା' ବାଟ
ସାଜୁଛି ସେ ଆଜ ସାହିତ୍ୟସମ୍ରାଟ ।
କବିପଦେ ଖଟି ନ ପାରେ ଯା' ମୁଣ୍ଡ
"କବିଭୂଷଣ ମୁଁ" ବୋଲୁଛି ତା ତୁଣ୍ଡ ।

କର୍ମକ୍ଷେତ୍ରେ ଯେହୁ ଅଜଗରେ ଗଣା
ବାକ୍ୟେ ତୋଳୁଛି ସେ ନାଗରାଜ ଫଣା ।

(୧) କଳସ୍ୱନ—ହାରମନସ୍ୱନ୍ । (୨) ଦଶକନ୍ଧ—ଲଙ୍କାଧିପତି ରାବଣ, ମିଥ୍ୟାବାଦୀ। ସତ୍ୟବାନ—ରାଜା ଦ୍ୟୁମତ୍ସେନଙ୍କର ପୁତ୍ର, ସାବିତ୍ରୀପତି, ସାଧୁ ।

ସୁରଙ୍ଗି, ଏ ରଙ୍ଗ- ମଞ୍ଚର ସେ ସ୍ୱାମୀ
ସର୍ବଦର୍ଶୀ ସେ ତ ସର୍ବ ଅନ୍ତର୍ଯ୍ୟାମୀ ।
ସେ ବିଶ୍ୱଗୁରୁଙ୍କ ବିଶ୍ୱ ରଙ୍ଗାଳୟେ,
ମତ୍ତ କପାଁ ଲୋକେ କୃତ୍ରିମାଭିନୟେ ?

ସ୍ୱଭାବେ ସ୍ଥାନଟି ନିତାନ୍ତ ସଂକୀର୍ଣ୍ଣ
ଦେଖୁଁ ଦେଖୁଁ ହୋଇ ଗଲା ଜନାକୀର୍ଣ୍ଣ ।
ଲୋକାରଣ୍ୟେ ବାଟ ହେଲା ନାହିଁ ଗଳା
କେ' କାହା ଉପରେ ପଡ଼ୁଛନ୍ତି ଢଳି ।
କେ' କାହିଁ ଆବଦ୍ଧ ପ୍ରିୟ-ସଙ୍ଗ ଛାଡ଼ି
କେ' କାହାର ପାଦ ଦେଉଅଛି ମାଡ଼ି ।
ଘନ-ଜନତାରେ କେ ବା ହଲଚଲ
ନପାରିଣ ଉଛେ ବୋଲେ "ମଲି ମଲି" ।
ବତଳ ବଳେ କେ ବା ପଶି ନାଶିଦଳେ
ଛଳନାରେ ବୋଲେ "ଠେଲୁଛନ୍ତି ଗଳେ" ।
କେତେ ସ୍ଥାନେ କେତେ ଚୌର୍ଯ୍ୟ ଲମ୍ପଟତା
ଚଳାଇ ନେଲା ସେ ନିବିଡ଼ ଜନତା ।
ବ୍ରାହ୍ମଣ ଚଣ୍ଡାଳ ସମସ୍ତେ ସମାନ
ସତବେଳେ କାହିଁ ଜାତି-ଅଭିମାନ ?
ରଖିନାହିଁ ହିନ୍ଦୁ- ଧର୍ମେ ଅସୁବିଧା,
ଦେଶ କାଳ ଜାଣି ଚଳେ ବଙ୍କା ସିଧା ।
ସ୍ଥାନ ଲାଗି କେତେ ନାଟ୍ୟାରମ୍ଭୁ ଆସି
ଏଣୁ ତେଣିକି କେ ନ ପାରନ୍ତି ଖସି ।
ନିଦାଘ ଗରମେ ଯେତେ ସ୍ୱେଦସିକ୍ତ
ନାଟ୍ୟ-ମାଧୁର୍ଯ୍ୟକ ମଣିଲେଣି ତିକ୍ତ ।
ମଣ୍ଡଳୀରୁ ଯେତେ ଲୋକ ବାହାରିଆ
ଉଦ୍‌ଗ୍ରୀବେ ଦେଖନ୍ତି ହୋଇ ଠିଆ ଠିଆ ।
କକ୍ଷାସୀନ ଶିଶୁ ସଙ୍ଗେ ଥିଲା ଯାର
ଜନତା ସ୍ୱଭାବ ମନେ ଥିବ ତାର ।

କମଳ ବନର         ବକଦଳ ପରି
ଭସ୍ମେ କଳେବର         ଧବଳିତ କରି,
ବସିଛନ୍ତି ଗଞ୍ଜା-         ନିଶା-ଯୋଗଧ୍ୟାନେ
ବାବାଜୀଏ ଯେ'ଣ୍ଡା         ଧୁନି-ସନ୍ନିଧାନେ ।

ମୃଦୁ ମନୋହର         ସୁମଧୁର ଗାନ-
ମକରନ୍ଦ ସୁଧା         କରିବାକୁ ପାନ
ଭ୍ରମର ପରାଏ         ଦର୍ଶକ ସକଳ
ବେଢ଼ିଛନ୍ତି ନାଟ୍ୟ         ସଙ୍ଗୀତ-କମଳ ।

ସେ ଦିଗକୁ ସାଧୁ         ସନ୍ନ୍ୟାସୀଙ୍କ ଗତି
ଅକାରଣେ କାହିଁ         ହେବ ପ୍ରଧାବିତ ?
ଯେତେ ମଧୁରତା         ଥିଲେହେଁ ଗୀତରେ
ପଶିବ କି ତାହା         ପେଟର ଭିତରେ ?

ଚିଲମ ଧୂଆଁ ତ         ଭିତରେ ବାହାରେ
ବ୍ୟାପିଯାଇ ପୁଣି         ମୁଖରୁ ବାହାରେ ।
ଦେଖି ତାଙ୍କ ଭସ୍ମ-         ବୋଳା ଅପଘନ
କାରଣ ଅନ୍ୱେଷି         ଭାବିଲା ମୋ ମନ ।

ଯେ ସମସ୍ତେ ଜୀବ         ତେଜିବ ସଂସାର
ମାଟିପିଣ୍ଡ ପୋଡ଼ି         ହେବ ଦିନେ ଖାର ।
ତେଣୁ ସେ ତତ୍ତ୍ୱର         ଗୂଢ଼ ପରିଚୟ
ଦିଅନ୍ତି କି ଏହି         ବାବାଜୀନିଚୟ ?
କିବା ତା' ପିମ୍ପୁଡ଼ି-         ମଶା-ମକ୍ଷିକାର
ଉପଦ୍ରବୁ ଆତ୍ମ-         ରକ୍ଷା-ପ୍ରତିକାର ?
କି ଦିନ କି ରାତି,         କି ଖରା ବରଷା
ଖୋଲାସ୍ଥାନେ ଯେଣୁ         ବାବାଜୀଙ୍କ ବସା ।

ସାରିଲା ଉତ୍ସବ-         ଆସୁ କ୍ରମେ ନିଶା
ଘାରିଲା ନୟନେ         ନିଦ୍ରାଳସ୍ୟ-ନିଶା ।
ନାଟ୍ୟ ଦର୍ଶନରୁ         ନେଇ ଅବସର
ଶୋଇବାକୁ ଲୋକେ         ହେଲେ ତରତର ।

ଗୋଟିପୁଅ ଚଉ- ପାଖେ ଗୋଟି ଗୋଟି
ଘୁଙ୍ଗୁଡ଼ିଲେ ନଦ ଆସିବାରୁ ଘୋଟି ।
ପଣ୍ୟପଥ ପଣ୍ୟ- ଶାଳା ବସାଘର
ପୁଳକ ଚଳନ- ପ୍ରତିମ ପ୍ରସ୍ତର ।
ଯହିଁ ଅନାଇଲେ ନନ୍ଦିତ ନନ୍ଦିତା
ଗଡ଼ଛନ୍ତି ସୁଖେ ଏଡ଼ ଭଯ୍ୟ ଚିନ୍ତା ।
ଗୁପ୍ତ ଅଭିଳାଷୀ ନରନାରୀଗଣେ
ଲାଗିଗଲେ ଯେଝା କାମନା ପୂରଣେ ।
କେଜାଣି ସେକାଳେ କସ ଦେଖି କାହିଁ
"କେ' କେ' ରେ" ବୋଲଣ ରାବିଲା ଟିଠାଇ ।
ପର୍ଯ୍ୟବେକ୍ଷଣରେ କାଟି ସେ ରାତିକ
ମୁଁ ମଧ୍ୟ ଦେଖିଛି ଯେଉଁଠି ଯେତିକ ।
ସେସବୁ ତନ୍ମୟ ଦେବଦେବୀ ନାଟ୍ୟ
କବି-ଦର୍ଶନୀୟ- ଛବି, ନୁହେ ପାଠ୍ୟ ।

(୧) କାନନ-କମଳା- ବନେ କଙ୍କିରାତ
ଭାଷିଲା ମଧୁରେ ଆସିଲା ପ୍ରଭାତ ।
ଶମ୍ଭୁଆଳେ କମ୍ବୁ ମୁହୁର୍ମୁହୁଃ ସ୍ୱନେ
ଜାଗରିତ କଲା ଯେପରି ସୁପ୍ତ ଜନେ ।
ଚନ୍ଦ୍ରଘଣ୍ଟ ବନ୍ଦ ଯଷ୍ଟିର ତାଡ଼ନା
ଲଭି ଚହ୍ଲାଇଲା ତାଡ଼ନା' ତାଡ଼ନା' ।
ଭୃଙ୍ଗରାଜ ଶୃଙ୍ଗ ତେଜ ପତଙ୍ଗିକା
ଆବରିଲେ ଫୁଲ୍ଲ କାନନ ମଲ୍ଲିକା ।
ଶୁଭିଲା ଦାନୁଡ଼ି ଚଢ଼-ବଂଶ ବନ
କୁସୁମ-କୁଞ୍ଜରେ ଭ୍ରମର ଗୁଞ୍ଜନ ।

(୧) କାନନ କମଳା—ବନଲକ୍ଷ୍ମୀ । ଉକ୍ତ ପର୍ବତର ପାଦଦେଶରେ ଏକପ୍ରକାର ଗଛ ଅଛ ଘଞ୍ଚ ଭାବରେ ଲାଗିଅଛି । ତାହାକୁ ସ୍ଥାନୀୟ ଲୋକେ 'ଝାଡ଼ କମଳା' ବୋଲି କହନ୍ତି । ବନ—ଗୁହ୍ମ, ଅରଣ୍ୟ । କଙ୍କିରାତ—କୋକିଳ । କମ୍ବୁ—ଶଙ୍ଖ । ପଣ୍ୟପଥ—ବଜାରଗଳି । ପଣ୍ୟଶାଳା—ଦୋକାନ ।

ଭଡ଼ା ଗଇଲରୁ ମୟୂର ମୟୂରୀ
ରଡ଼ା ସନ୍ନିକଟେ ଆସନ୍ତ ଉଡ଼ୁରି ।
ଢ଼ବାଗମ ଦେଖି ଯେତେକ ପସାରୀ
ସତର୍କ ରହିଲେ ପସରୁ ପ୍ରସାରି ।

ପାଖେ କେହି ଠିଆ ହେଲେ ଅଲକ୍ଷଣ
ପଶୁରେ ଦୋକାନୀ କହ ନେବ କ'ଣ ?
କା' ମନୋଭାବ ସେ ବୁଝିପାରିବ କ
ସେକାଳେ ତା' ନେନେ ସକଳେ ଗହକ ।

ନିଜ ଜିନସର ଉତ୍କର୍ଷ ବର୍ଣ୍ଣନ
କରି କେ ଟାଣୁଛି ଗ୍ରାହକଙ୍କ ମନ ।
ଲଟିଲି ଗହଳ- ରବେ କଣା ବକା
ଚଣା ଭୂଜା ଚୂଡ଼ା ଉଖୁଡ଼ା ଖାଜକା ।

ପେଡ଼ା ରସଗୋଲା ଚଖାଇ ଆଦର
କରି କେ' ବୁଝାଏ ସେର-ପାଆ-ଦର ।
ସିଗାରେଟ ବଡ଼ି ଖାଡ଼ି ବଡ଼ା ପାନ
ଲଗିଛି ବାବୁଙ୍କ ଆଦାନ ପ୍ରଦାନ ।

ଟିଣ ପିପିଟିଏ କିଣିଦେବା ଲଗି
ମା' ପିଣ୍ଟରେ କେଉଁ ଶିଶୁ ଅଛି ଲଗି ।
ବ' ଆପଡ ଲଦି ଶିଶୁ ମୁଖଭାଗେ
ରବର ପିଚୁଲା କଣୁଛି କେ ରାଗେ ।

ସାବୁନ ଖଣ୍ଡେ କେ' ଦେଇ କାହା କରେ
ମୂଲ୍ୟ ନେବାକୁ ସେ' ନାହିଁ ନାହିଁ କରେ ।
କେ ବା କିଣି ଆଣି କଦଳୀ ମିଠାଇ
କା ପଣନ୍ତେ ବଳେ ଦେଉଛି ଗଣ୍ଡାଇ ।

ଏହି ଭାବେ ସ୍ନେହ- ପ୍ରେମ-ନିଦର୍ଶନ-
ପ୍ରଦାନେ ଲଗିଛି ବଦାନ୍ୟ ଦର୍ଶନ ।

ରାଜେନ୍ଦ୍ର ଲାଲଙ୍କ ଅତିଥି ସତ୍କାର
ସକାଶେ ଫିଟିଲ ଦାତବ୍ୟ ଭଣ୍ଡାର ।

ସେ କାର୍ଯ୍ୟ ଚାଳନେ    ନାମୀ ନାମୀ ଲୋକେ
ଥିଲେ ବନ୍ଧୁ, ମାତ୍ର    ଲଗିଗଲେ ଥୋକେ ।
(୧) ବନମାଳୀ ତହିଁ    ବନେ ହୁସିଆର
ବାଛି ଦେଇଥିଲେ    ନାମ କାମଚାର ।
(୨) ଆଗତ ଅତିଥି    ସଂଖ୍ୟା ବୁଝି ହାଡ଼ି
ବାଣ୍ଟିଥିଲେ ଖାଲି    ପାତୁଲାଦ ହାଁଡ଼ି ।
(୩) ମାପି ମାପି ଡାଲି    ଚାଉଳ ଭିଖାରୀ
ଦେଉଥିଲେ ଦେଖି    ଅତିଥି ଭିକାରୀ ।
(୪) ଚାକର ସାହାଯ୍ୟ    ନ ନେଇ ଚକର
ଦେଉଥିଲେ ଖଲି    ଚକନ ପତର ।
(୫) କେ' ପାଇଛି କଏ    ପାଇନାହିଁ ଦୃଷ୍ଟି
ଏଇ କାର୍ଯ୍ୟ ଧରେ    ଦେଇଥିଲେ ଦୃଷ୍ଟି ।
(୬) ଲଏଖନଙ୍କର    ଖାଲି ଲେଖା କାମ
ଖରଚ ହିସାବ    ଅତିଥିଙ୍କ ନାମ ।
କିବା ଦୁଃଖୀ ସୁଖୀ    କି ମୂର୍ଖ ପଣ୍ଡିତ
ଏ କାର୍ଯ୍ୟେ ସବୁର    ମନ ଆନନ୍ଦିତ ।

ସାରା ରାତି ଦେଶ-    ଚିନ୍ତା କରି କରି
ସ୍ୱାର୍ଥତ୍ୟାଗ ପର-    ଚମ୍ପୂ ଦେଲାପରି,
କେତେକ ବାବାଜୀ    ପକାଇଣ ଚୁଲି
ବସିଛନ୍ତି ଆଖି    କରି ଲାଲ ଲାଲ ।

---

(୧) ବନମାଳୀ—ବୋଡ଼ାସମ୍ବର ଜମିଦାରୀରେ ଥିବା 'ଗସ୍ତିଡ଼ିହ' ଗ୍ରାମର ଗୌନ୍ତିଆ । ବନେ—ଭଲ (ସମ୍ବଲପୁରୀ ଶବ୍ଦ) ।

(୨) ହାଡ଼ି ପାଣିଗ୍ରାହୀ—ମ୍ଲେଚ୍ଛାମୁଣ୍ଡା ଥାନା· ଶଳମାଲ ନାକାର ମୋହରିର । ପାତୁଲ—କ୍ଷୁଦ୍ର ଅଟିକା (ପାତ୍ର ଶବ୍ଦଜ) । ହାଁଡ଼ି—ହାଣ୍ଡିକା ଶବ୍ଦଜ ।

(୩) ଭିକାରୀ ନାୟକ—ଗାଇସ୍ଲେଟ ପ୍ରଗଣାର ଦଫାଦାର । (୪) ଚକ୍ରଧର ପାଣ୍ଡେ—ସିଲେଟ୍‌ପଲ୍ଲୀର ଖମାରୀ । ଖଲ—ପତ୍ରଦ୍ୱାରା ନିର୍ମିତ ବସ୍ତୁତ ପାତ୍ର । ଚକନ—ପତ୍ରଠୋଲା (ଚତୁଷ୍କୋଣୀ ଶବ୍ଦଜ) । (୫) ଯୁଧିଷ୍ଠିର ନାୟକ—ନୂଆପଡ଼ା ପ୍ରଗଣାର ଦଫାଦାର । (୬) ଲକ୍ଷ୍ମଣ ପାଢ଼ୀ—ଗୋରଣ୍ଡା ପ୍ରଗଣାର ଦଫାଦାର ।

ଥୋକେ ଯାଇ ଧର୍ମ- ଭଣ୍ଡାରର ପାଖେ
ଫର୍ଦ୍ଦ ସନ୍ତ୍ରୁ ଆଶୀ ନଯ୍ୟୋଜଣ କାଖେ ।
ଶୁଣ୍ଡୁ ଲ ବଦନେ ଗାଉଛନ୍ତି ରାମ-
ପଞ୍ଚବର୍ଣ୍ଣେ ଲଲ ରାଜେନ୍ଦ୍ରଙ୍କ ନାମ ।

ମନ୍ଦିର ସମ୍ମୁଖେ ଯୁବକ ଯୁବତୀ
(୧) ରୁଣ୍ଡୀଭୂତ ମଣ୍ଡି ପଟଳ ପଦ୍ଧତି ।
ଶୋଭାମୂର୍‌ଧ ଏକ ଯୁବା ନେତ୍ରାନନ୍ଦ
ସମ୍ୱରି ନପାରି ଆପଣା ପସନ୍ଦ,

ପ୍ରିୟ ସହଚରି ଗୋଟିକି ଅନାଇ
ବୋଲେ ଦେଉଳଟି କି ସୁନ୍ଦର ଭାଇ !
ପର୍ବତକୁ ଆଛା ଶୋଭୁଛି ଦେଉଳ
ଶମ୍ଭୁଶିରେ ଯେହ୍ନେ କଡ଼ି ମଲ୍ଲୀଫୁଲ ।

କି ଅଖଣ୍ଡ-ଚନ୍ଦ୍ର ସ୍ଥିର ଖଣ୍ଡ ଘନେ
(୨) ଫୁଟି ପଡ଼ଅଛି ଘନାନ୍ତ ଗଗନେ ।
ଅଥବା ଶୈବାଳେ ଧବଳ କୁମୁଦ
ପ୍ରଫୁଲ୍ଲିତା ଲଭି ଦେଖାଉଛି ମୁଦ ।

ଦୋଳା ସନ୍ତରଣେ ବଳାଇ ମାନସ
(୩) ଦେବାଳୟୁ ରୂପେ ଦେବାଗ୍ରଜ ହଂସ
ଉଡ଼ି ଆସି କବା ଶୈଳେ ଅଛି ବସି
ସୁରଙ୍ଗୀକ ମଣି ସୁରଙ୍କ ସରସୀ ।

ଗଙ୍ଗା ପରି କବା ସୁରଙ୍ଗୀକ ଗୃହଁ
ଛଦ୍ମେ ଐରାବତ ଆସିଥିଲା ଧାଇଁ ।
(୪) ସୁରଙ୍ଗୀ ଶାପେ ସେ ପାଲଟିଛି କୁଟ
ଦେଉଳଟି ତା'ର ରଜତ-ମୁକୁଟ ।

କି ଅବା ଏ ରମ୍ୟ ଶିବ-ଅଙ୍କାଳିକା
ସୁରଙ୍ଗୀ-ବୈଷ୍ଣବୀ- ରାମାନନ୍ଦୀ-ଟିକା ।

(୧) ପଟଳପଦ୍ଧତି—ବାଂଶ ଗୁଳଦ୍ୱାରା ନିର୍ମିତ ପଥ । (୨) ଘନାନ୍ତ—ଶରତ୍‌କାଳ ।
(୩) ଦେବାଗ୍ରଜ—ବ୍ରହ୍ମା । (୪) କୂଟ—ପର୍ବତ ।

ନା’ ନା’ ଏ ସୁରଙ୍ଗୀ    ରସବନ୍ତ ଯୋଷା
ଶଇଲଟି ତାର    ତଇଲଙ୍ଗୀ ଖୋଷା ।
ଖୋଷା ମଧ୍ୟେ ଫୁଟି    ହସେ ଯା’ ମଞ୍ଜୁଳ
ଚଉଁରମୂର୍ତ୍ତି ସେ    ମୁହଇ ଦେଉଳ ।
(୧) ଚେଣ୍ଡୁ ସୁରଙ୍ଗୀର    ଶୋଭା-ପ୍ରେମ-ରସି
ରସିକ ହୃଦୟ    ନଏ ଆକରଷି ।
(୨) ଏଡ଼େ ସୁନ୍ଦରୀ ଏ    ଦଶ୍ରି-ଆଶା ହେବ
କେ ଜାଣି ଥିଲା ହେ ?    ବରହା ସାହେବ—
ଜଲେ ସିନା କେତେ    କେତେ ଟଙ୍କା ସାର
ଟଙ୍କାରେ କ କର    ନପାରେ ସଂସାର ?
ମାଡ଼ିଲା ସେ ଦନୁ    ଏ ଦେଶର ସୀମା
ସଚନ ଟଙ୍କାର    ହଚନ ମହିମା,
ବଢ଼ିଲା ସେ ଦନୁ    ଧର୍ମ-ଅର୍ଥ-କଳା
ନ ପାରଲେ ଲୋକେ    ଧର୍ମ ଅର୍ଥ କଳା ।
ଧର୍ମାବତାରଙ୍କ    ଯୁଗ-ଧର୍ମାଳୟ
ଘୋଷୁଅଛି ସଦା    ଟଙ୍କା ନାମେ ଜୟ ।
ଦୁଃଖ ଜଣାଇଲେ    ନ ଦେଖାଇ ଟଙ୍କା
ଟଙ୍କାଧୀନ-ଧର୍ମ    ମୁହଁ କରେ ବଙ୍କା ।
ଭ୍ରମି ଦେଖ ନାନା    ତୀର୍ଥ ପୁଣ୍ୟସ୍ଥଳ
ଟଙ୍କା ଲୋଡେ ପଣ୍ଡା    ପୁରୋହିତଦଳ
ସାରୁ ବାଇଗଣ    ପର ପୁଣ୍ୟ ମୁକ୍ତି
ହସନ୍ତୁ କଲେଣି    ବାଡ଼ି ତର୍କ ଯୁକ୍ତି ।
ମୁଣି ମୁଣି ଟଙ୍କା    ଝୁଣି ଝୁଣି ଆଜ
ନିର୍ଲଜ୍ଜ ନିର୍ଦ୍ଦୟ    ନିଷ୍ଠୁର ସମାଜ—
କଅଁଳା କନ୍ୟାକୁ    ହକ ବୃଦ୍ଧ କରେ
ଭସୁଅଛି ସିନା    ଘୋର ନରକରେ ।
ଆଜ ଯେ ସ୍ୱଦେଶ-    ହିତ ଅଭିଳାଷୀ
ଟଙ୍କା ଇଙ୍ଗିତେ ସେ    କାଲ ସର୍ବଗ୍ରାସୀ ।

(୧) ରସି—ଦଉଡ଼ି (ସମ୍ବଲପୁରୀ ଶବ୍ଦ) । (୨) ଦଶ୍ରି-ଆଶା—ଗିରଗହ୍ୱର ଦଶା ।

(୧) ଗୋଟିଏ ଟଙ୍କାରେ — କୋଟିଏ ପ୍ରାଣୀର
ଉଣ୍ଡି ଚପିବାକୁ — ଛନ୍ତି କେତେ ଥର ।
ଟଙ୍କା ପଦେ ଆଜ — ଶବ୍ଦ ମାନମଥା
ହରାଇଛୁ ଦେଶ — ଆତ୍ମ-ସଙ୍ଗବତା ।
ଟଙ୍କା ମହିମାରେ — ମୃତ ବ' ପ୍ରତାପୀ
ଧାର୍ମିକର ଗୁଣ୍ଟି — ଝିଙ୍କେ ଆଜ ପାପୀ ।
ଚମ୍ପ ମୁଣ୍ଡେ କରେ — ମଣ୍ଡୂକ ନର୍ତ୍ତନ
ବ୍ୟାଘ୍ର କର୍ଣ୍ଣେ କରେ — ମୂଷିକ କର୍ତ୍ତନ ।
ଉତ୍ତରଲା ଜଣେ — ତୋ କଥାଟି ସତ
ମାତ୍ର ଏ କାର୍ଯ୍ୟରେ — ଅଛୁ ଭିନ୍ନ ମତ ।
*"ସୁନ୍ଦରେ ତୃପ୍ତିର — ଅବସାଦ ନାହିଁ
ଯେତେ ଦେଖୁଥିଲେ — ନୂଆ ଦିଶୁଥାଇ ।"
(୨) ଲେଖିଛନ୍ତି ଯାହା — ରାୟ କବିବର
ଲୁପ୍ତ ଅଛୁ ତହିଁ — ଲକ୍ଷ୍ୟଟି ସୁନ୍ଦର ।
ନିସର୍ଗ ସୌନ୍ଦର୍ଯ୍ୟ- — ଉପଭୋଗୀ ନର
କ୍ଷୀଣ ଅଟେ ଶୋଭା- — ପ୍ରୀତ ନୟନର ।
ସୌନ୍ଦର୍ଯ୍ୟ ଉପରେ — ସୌନ୍ଦର୍ଯ୍ୟର ଯୋଗ
କରି ଲଭେ ନବ — ନବ ଉପଭୋଗ ।
ଇଚ୍ଛାଟି ତାହାର — ସୌନ୍ଦର୍ଯ୍ୟ ତରଙ୍ଗେ
ହସି ହସି ଭାସୁ- — ଥାନ୍ତା ନବରଙ୍ଗେ ।
ସାରା ସଂସାରର — ସୌନ୍ଦର୍ଯ୍ୟ-ମାଧୁରୀ
ନିଜ ନୟନାଗ୍ରେ — ରହିଥାନ୍ତା ପୂରି ।
ନୋହିଲେ କି ଶିଶୁ — ସୌନ୍ଦର୍ଯ୍ୟ ଲାଳସୀ
ମାତାକୁ ମାଗନ୍ତା — ସରଗର ଶଶୀ ?

---

(୧) ମିଛୁଆ ସାକ୍ଷୀ ପ୍ରତି ଲକ୍ଷ୍ୟ । (୨) ରାୟ ରାଧାନାଥ ରାୟ ବାହାଦୁରଙ୍କ ପ୍ରଣୀତ 'ଚିଲିକା' କାବ୍ୟାନ୍ତର୍ଗତ ପଦବିଶେଷ: "ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।"

* କ୍ଷଣେ କ୍ଷଣେ ଯନ୍ନବତାମୁପୈତି,
ତଦେବରୂପଂ ରମଣୀୟତାୟାଃ । (ମାଘ)

ସେହି ଇଚ୍ଛା ଆମ୍ଭ ଜମିଦାରଙ୍କର
ଦେବଦହେ କର- ଅଛି ଶୋଭାକର ।

ବାଳାଟିଏ ପୁଣି ଦେଲା ପ୍ରତିବାଣୀ
ତୁମ୍ଭେ ମଧ୍ୟ ଏହା ପାରନାହିଁ ଜାଣି ।
(୧) ପୁଣ୍ୟଶୀଳା ପତି- ପ୍ରାଣା ଶିଖାମଣି
ମହାଦେଈଙ୍କର ଈଶ୍ୱର ଭକତି-
ନିଦର୍ଶନ ସିନା ଏହି ଦେବାଳୟ
ଧନ୍ୟ ତାଙ୍କ ସତୀ ସାଧବୀ ହୃଦୟ ।
ଥରେ ଜମିଦାର ସାଙ୍ଘେବ ପୀଡ଼ିତ
ଅବସ୍ଥାରେ ଥିଲେ ନିରାଶ-ମୂର୍ଚ୍ଛିତ ।
ତା ଦେଖି ଶ୍ରୀମତୀ ଶିଖାମଣି ରାଣୀ
ବନତ ମସ୍ତକେ ହୋଇ ଯୁକ୍ତପାଣି,
କହିଲେ ବ୍ୟାକୁଳା ଭକ୍ତିପୂର୍ଣ୍ଣ ସ୍ୱରେ
ଦୁଃଖହାରୀ ହର, ମମ ପ୍ରାଣେଶ୍ୱରେ
ପ୍ରାଣ ଭିକ୍ଷାଦାନେ କର ଧର୍ମରକ୍ଷୀ
ଶୀତଳଷଷ୍ଠୀରେ ତୁମ୍ଭଙ୍କୁ ପୂଜିବି ।
ହର କୃପାବଳେ ଦୁଃଖ ହେଲା ଦୂର
ଲଭିଲେ ଆରୋଗ୍ୟ ଲାଲ ବାହାଦୁର ।
ଅଳ୍ପ ଦିନେ ରାଣୀ- କଳ୍ପନା-ବିଳାସ
ଦେବ୍‌ଦହକୁ କଲା ନବ କପିଳାସ ।
ସଖୀଟିଏ ବୋଲେ ସତ କି ଲୋ ସହି ?
କିପରି ଜାଣିଲୁ କିଏ ଥିଲା କହି ?
କେହୁ ବୋଲେ ମୋତେ ନଲାଗେ ପରତେ
ରଜାଘର କଥା ଜାଣିଲା କେମନ୍ତେ ?
ତା' ଶୁଣି ପ୍ରଥମା ଦେଲା ପ୍ରତ୍ୟୁତ୍ତର
କେଉଁ କଥା ମୋତେ ଅଛି ଅଗୋଚର ?

(୧) ଶ୍ରୀମତୀ—ବୋଡ଼ାସମ୍ବର ଜମିଦାର ଶ୍ରୀ ଶ୍ରୀ ଲାଲ ରାଜେନ୍ଦ୍ର ସିଂହ ବରିହା ବାହାଦୂରଙ୍କ ସହଧର୍ମିଣୀ; ବଡ଼ରାଣୀ ।

ଏ ଦେଉଳେ ଅଛି ଯେବଣ ବାବାଜୀ
ତାଙ୍କୁ ପଚୁର ମୁଁ କହୁଛି କ ସାଜ ?
ଏପରି ଅଚ୍ଛିନ୍ନ- କଳ୍ପନା ବିସ୍ତାରି
ଦେବଦନ୍ତ ଦରେ ଗଲେ ସର୍ବ ନାଶ ।

ତେଣେ ଦେବଦନ୍ତ- ପାର୍ଶ୍ୱ-ଗଣ୍ଡେ ଜନ
କରୁଛନ୍ତି ହର୍ଷେ ସ୍ନାନାଦି ତର୍ପଣ ।
ଥୋକେ ପଶିଯାଇ ବାଘେନ-ଗହ୍ୱରେ
ଅଳ୍ପ ଦୂରୁ ଘୁଞ୍ଚି ଆସନ୍ତି ଭୟରେ ।
ମତ୍ସ୍ୟ ସନ୍ଦର୍ଶନେ ତତୋଽଧିକ ନର
ମଣ୍ଡି ଛନ୍ତି ଦନ୍ତ- ମଧ୍ୟସ୍ଥ ପ୍ରସ୍ତର ।
କଏ କରତାଳି ମାରି କେ ଜୁହାର
କରି ବୋଲୁଛନ୍ତି ବାହାର ବାହାର ।
ନାରୀବୃନ୍ଦ ଦେଖି- ବାକୁ ମତ୍ସ୍ୟ ମଜା
ବିକ୍ଷିପନ୍ତି ଜଳେ ଭୂଜାଗୁଣ୍ଡ ଖଜା ।
ଦଳଦଳ ହୋଇ ଉଁଡ଼େଇ, ଜରେଲ,
କୁଟୁରି, ଗଉରି- ଚୂଲି, ମହରେଲ—
ଚଞ୍ଚଳେ ଝୁଙ୍କନ୍ତି ହର୍ଷ ଅନୁଭବ
ନାରୀନେନେ ଗାରି ଘାତପୁଟା ଛବ ।
କେତେବେଳେ ପାଖେ ବଡ଼ ମାଛଟାଏ
(୧) ଆସି ଝାଲ ମାରି ଯଦି ବା ପଳାଏ
ଚମକି ନାରୀଏ ଚାହିଁ ପରସ୍ପରେ
କହୁଥାନ୍ତି କେତେ ମାଛ ଦେଖ ତ ରେ !
କେଉଁ ନାରୀ ବୋଲେ ଏ ମାଛଟି ସାନ
ଅଧେ ଛନ୍ତି ପୋଡ଼ ବଳଦ ସମାନ ।
ଛତାଠାରୁ ବଡ଼ ଅଛନ୍ତି କଇଁଛ
ମରିଯିବ ମୁହିଁ କହୁଥିଲେ ମିଛ ।
ସମର୍ଥିଲା ଜଣେ— ହେଲେ ସତ ହେବ
ସେ ମାଛ ତ' ନେଲେ ପୋଡ଼ ଝିଙ୍କି ନେବ ।

(୧) ଝାଲ—ବୃହନ୍ମତ୍ସ୍ୟ ସନ୍ତରଣଦ୍ୱାରା ଉତ୍କ୍ଷିପ୍ତ ଜଳାଂଶ ।

(୧) କେହୁ ବୋଲେ ମାଛ — ଆମ ଗାଁ କଁଟାରେ
(୨) ଘଡି ହେଲେ ଖାଲି — ଚରନ୍ତି ଭଁଟାରେ ।
କାହାଠାରୁ ଶୁଣି — କେବଣ ସୁବକ୍ତା
ଆମ୍ର ଅଭ୍ରଙ୍କତା — ପ୍ରକାଶି ଝଂକୃତ
ଅଙ୍ଗୁଳି ନର୍ଦ୍ଦେଶେ — ଦେଖାଏ ସତ୍ୱର
ଦେଖ ଘଣ୍ଟିମାନେ — ସେଇଟି ମଗର ।
ତାଙ୍କ ଆଗୁଁ ଆଗେ — ଦେଖିଯାଉ ଜେମା
ସହାସ ବ୍ୟରଷେ — ବୋଲେ ସତେ ରେ ମା'
ପୋଡ଼ାକାଠ ପରି — ଦିଶୁଛି କେମନ୍ତ
(୩) ସାର ହେଲାଣି ମୋ' — ସବୁ ଦହସତ ।
ଅନୁତାପି ଏକ — କୋମଳ-ବଚନା
ବୋଲେ ମୁଁ ପାପିନୀ — କପାଁ କଲି ମନା ?
(୪) ଆସିଥିଲେ ଦେଖି- — ଥାନ୍ତା ମୋର କଳା
ନ ଆଣିବାରୁ ସେ' — କେତେ ଦୁଃଖ କଲା ?
ଉତ୍ତରିଲା ଜଣେ — କପାଁ ଏତେ କଥା
ସଙ୍ଗେ ଆଣିବାକୁ — ଲାଗିଲା କି ବ୍ୟଥା ?
ଶୁଣି ମଧୁକଣ୍ଠୀ — ଦେଲା ପ୍ରତିବାଣୀ
ନ ଆଣିଲି ମା' ଏ — ଯୁଗ କଥା ଜାଣି ।
ବଢ଼ିଲା ଝିଅର — ଉଛୁଳା ବୟସ
ଭାବିଲି କିଏ ବା — କହିଦେବ କସ ?
ଦାଣ୍ଡେ ଉଠେ ଖସି — ପଡ଼ିଲେ ମହତ
ହସିବାକୁ ଘଣ୍ଟେ — ଛନ୍ତି ଶତ ଶତ ।
ସେଥିଲାଗି ତାକୁ — ଏପରି ସ୍ଥାନକୁ
ଆଣିବାକୁ ସେତେ — ନଇଲି ମନକୁ ।
ସ୍ୱଭାବେ ତ' ରମା — କଳହ-ଚତୁରା
ତର୍କ-ସମର୍ଥନେ — ହୋଇ ଆଗଭୁରା
କହିଲା—ଯା ମନ. — ରସିବ ପାପରେ
ରଖିଲେ ହେଁ ତାକୁ — ପରଦା-ରୂପରେ ।

(୧) କଁଟା—ବୃହତ୍ କଳାଶୟ । (୨) ଭଁଟା—ସ୍ଥଳଭାଗ । (୩) ଦହସତ—ଶ୍ରମ ।
(୪) କଳା—କଳାବତୀନାମ୍ନୀର ଖଣ୍ଡିତ ନାମ ।

ସାଧିନେବ ସେତ୍ତୁ ନିଜର କାମନା
ଅଟକାଇ ପାରେ ନାହିଁ ବାଧା ମନା ।
ନୋହିଲେ ଯାହାର ମନ ନିରମଳ
ସହିଁ ଥିଲେ ତାର ଇଜତ ଅଟଳ ।
(୧) ଯେ କାଦୋ ମାଡ଼ିଲା ସେ ଗୋଡ଼ ଧୋଇବ
କାହାର କି ଗଲା କେ କିସ କହିବ ?
ନ ଦେଖି ଆମକୁ କେଉଣ ଭଣଜା
କେ' ବହି, କହୁ ତ' ଦେଖିବ ତା ମଜା ।
କଳହକୁ ଡରି କଳାବଗର ମା'
ବୋଲେ କି କହୁଛୁ କି ବୁଝିଲୁ ରମା ?
କଥା ପଡ଼ନାହିଁ ପୁଣ୍ୟ ବା ପାପର
ଭଲ ସ୍ୱଭାବଟି ନୁହେ ତା ବାପର ।
ସଞ୍ଜ ହେଲେ ତାକୁ ଅନ୍ୟର ଦୁଆର
(୨) ମାଡ଼ି ନ ହୁଏ ସେ କି କହିବୁ ଆର ?
ପୁଅଠାରେ ସିନା ବାପର ଆକଟ
ଝିଅ ଲାଗି ସେ ତ' ଘର ଛଟପଟ ।
ନୋହିଲେ ଏପରି ଉଛବ-ଭୂଇଁକି
ଝିଅକୁ ନଆଣି ଆସନ୍ତି ମୁହିଁ କି ?

ସ୍ତ୍ରିରୀଙ୍କ କଥା ତ ଝିପିରି ବରଷା
ଲାଗିଥିଲେ ବନ୍ଦ ନହୁଏ ସହସା ।
କଳା-ମା' କଥାରେ ଖୋଜ ଛିଦ୍ର ଭାବ
ପୁଣି ଦେଇଥିବ କେ' କିସ ଜବାବ ।
(୩) ତୁ ଶୁଣିଥିବୁ ଗୋ ଉପଳ-ଉରସି,
ମୁଁ ତ ସ୍ଥାନାନ୍ତର ଗଲି ହସି ହସି ।

(୧) କାଦୋ—କାଦୁଅ (କର୍ଦ୍ଦମ ଶବ୍ଦଜ) । (୨) ଆର—ଆଉ, ଅନ୍ୟ । (୩) ଉପଳଉରସୀ—ବର୍ଣ୍ଣିତ ସ୍ଥାନର ପ୍ରସ୍ତରମୟୀ ନଦୀଶଯ୍ୟା ଦୃଶ୍ୟାନୁଯାୟୀ ଯୁବତୀପ୍ରତି ପ୍ରଯୁକ୍ତ ସମ୍ବୋଧନ ପଦ ।

ନିକଟ ଗ୍ରାମର    ଦର୍ଶକ ସକଳେ
ଅବଗାହି ଦନ୍ତା,    କନ୍ଦଅନ୍ତା ଜଳେ,
ପୁରେ ବାହୁଡ଼ନ୍ତ,    ନାଟ୍ୟ ସଙ୍ଗୀତର
ଗୁଣ ଦୋଷେ ବାଢ଼ି    ମତ ମତାନ୍ତର ।
କେହୁ ବୋଲେ ରଜା    ଠାଣିଟା ଅସଲ
କେ ବୋଲଇ ରାଣୀ    ନାଚୁଥିଲା ଭଲ ।
ଆନ କେହି ବୋଲେ    ସେ ଗୁଡ଼ାକ ଗୁଡ଼
ଦୂତ ମନ୍ତ୍ରୀ ଯଦି    ନୋହିଥାନ୍ତେ ମାଡ଼,
ନାଟ ଟେକେବେ ଧର    ଥାନ୍ତା କି ଯମକ ?
କି କରନ୍ତା ଠାଣି-    ମାଣି-ଝଙ୍କମଙ୍କ ?
କେହୁ ବୋଲେ ଅତା-    ଖାର୍-ସଙ୍ଗୀତର
ଭଲ ନ ଲାଗିଲା    ଚୋଟିପିଲା ସ୍ୱର ।
ହାରମନବାଲା    ଥିଲା ଜଣେ ଖାଲି
ନୋହିଲେ ମୁଁ ମାରି    ଦେଇଥାନ୍ତି ତାଳି ।
ଏହିମତେ ନାନା    ଆଲୋଚନା କରି
ଚଳିଲେ ଯେ ଯାହା    ପଥ ଅନୁସରି ।
ମୁହିଁ ମଧ୍ୟ ଏକ    ପ୍ରିୟ ବନ୍ଧୁଙ୍କର
ଉଚିତାନୁରୋଧ    ମଣି ହିତକର,
ମାଧ୍ୟାହ୍ନ ତାପ    ମନେ ଅନୁଭବି,
(୧) ଆସିଲି "ମହୁଲ    ପାଲି"ର ପଦବୀ ।
ଉକ୍ତ ଗ୍ରାମ ସ୍ଥିତ    ବଇଷ୍ଣବ ଘର
ମାତୁଳାଳୟ ମୋ    ସେହି ବନ୍ଧୁଙ୍କର ।
ତହିଁ ରହି ଯଥା-    ଯୋଗ୍ୟ ସମାଦରେ
ଚିତ୍ତ ନିବେଶିଲି    ଭରଣୀ ପାଦରେ ।
ଧରାପୃଷ୍ଠେ ରବି    ଅବିରଳ ଖର
କରାଇଲେ ବେଳୁଁ-    ବେଳକୁ ପ୍ରଖର ।
ଅଙ୍ଗ-ତଟ-ପଠା    କ୍ଷେତ୍ର ଇକ୍ଷୁବନ,
କ୍ରମେ କ୍ରମେ ହୋଇ    ଆସିଲା ବଜନ ।

(୧) ମହୁଲପାଲି—ଏହି ଗ୍ରାମ ଜଗଦଲପୁର ଥାନାନ୍ତର୍ଗତ ଲଖମରା ଗ୍ରାମ ନିକଟରେ ଅବସ୍ଥିତ । ପଦବୀ—ବାଟ ।

ପଥିକ ପଯ୍ୟୁରେ ଲାଗି ଧୂଳି ବାଲି
(୧) ଭୂରୁଗ ପରଏ ଲଗିଲାଣି ଖାଲି ।
ତପ୍ତ ପ୍ରଭଞ୍ଜନ ବହିଲା ପ୍ରଖରେ
ଆବାସ ଆଶ୍ରୟ ନେଲେ ନାଗ୍ୱନରେ ।

(୨) ଛେଳ ଗୋ ମହିଷ ଆଶ୍ରିଲେ ଗୁହାଳ
(୩) ଘାଇବାକୁ ଥିର କୁଣ୍ଡାଦ୍ଧ ପୁଆଳ ।
(୪) ଫେନଳ ତୁଣ୍ଡରେ ଘଇରଭଗଣ
ନେତ୍ର ମୁଦ୍ଧ କଲେ ଚର୍ବିତଚର୍ବଣ ।

(୫) ଓଳତଳେ ଅଳ୍ପ ଓଲ ସ୍ଥାନ ପାଇ
ପ୍ରଶ୍ୱାସିଲା ଶ୍ୱାନ ରସନା ଲମ୍ବାଇ ।
ବସିଲା କୁକ୍‌କୁଟ ଖୋଳି ଓଦା ମାଟି
ପ୍ରକମ୍ପିତ କଣ୍ଠେ ମେଲି ଅଳ୍ପ ପାଟି ।
ଗୃହଛିଦ୍ରେ ଗୃହୀ ପ୍ରଚଣ୍ଡ ତପନେ
ଗାଳଦେଲା ପାଗ ଘୁଷ୍ମୁରୁଙ୍କୁ-ସ୍ୱନେ ।

(୬) କେ' ବା ଆଶ୍ରି ତ଼ବା କାକର ବଖରା
ମନକୁ ବୋଧିଲା କ କରବ ଖର୍ବ ?
(୭) ଓଦା ଅଙ୍ଗଛା କେ ଗୁଡ଼ି ଘରେ ଲଦ୍ଧ
ପଡୁଡ଼ିଲା ସୁଖେ ପାରି ଖଟ ଗଦ ।
କେ' ବା ଚୂନଟିକା ମାଖି ପାନ ଖାଇ
ଘରେ ଘରେ ଦେଲା ମଉଜ ଦେଖାଇ ।
ଗାଇଲା କେ ଧୀରେ "ମଥୁରା ମଙ୍ଗଳ",
(୮) କେ ଝାଡ଼ିଲା 'ଧାଡ଼' ଝଙ୍କାରଣ ଗଳ ।
କେତେକ ଯୁବକ ଖେଳ ରଙ୍ଗ ତାସ
ଉପଭୋଗ କଲେ ଆମୋଦ ଉଲ୍ଲାସ ।

---

(୧) ଭୂରୁଗ—ଭସ୍ମାଗ୍ନି । (୨) ଗୁହାଳ—(ଗବାଳୟ ଶବଜ) ଗୋରୁ ମହିଷାଦ ରହିବା ଘର । (୩) ପୁଆଳ—ପାଲ । (୪) ସୈଭ—ପୋଢ଼ । (୫) ଓଲ—ଓଦା । (୬) ବଖରା—କୋଠରୀ । (୭) ଅଙ୍ଗଛା—(ଅଙ୍ଗପ୍ରୋଛନୀ ଶବଜ) ଗାମୁଛା । (୮) ସମ୍ବଲପୁର ଅଞ୍ଚଳରେ ଚତୁର୍ଦ୍ଦଶାକ୍ଷରୀ ଗ୍ରନ୍ଥପାଠକୁ 'ଧାଡ଼' କହନ୍ତି ।

ଠୋକା-କୋଳାହଳୁଁ　　ଶୁଣି ଛକା ଛକା
(୧) ମନେ କଲି ତହିଁ　　ଲାଗିଥିବ 'ଛକା' ।
ବାଳକ ବାଳିକା　　ହୋଇ ଦଳଦଳ
କ୍ରୀଡ଼ା କଲେ　　ଆମ୍ର-ତରୁ-ତଳତଳ ।
ଘରପୋଡ଼ ଡ଼ର　　ଜଣାଇ ଦାଣ୍ଡରେ
(୨) ଡାକ ଦେଲା ଗଣ୍ଡା　　ପ୍ରଳମ୍ବ-ତୁଣ୍ଡରେ ।
ବମୁର, ଚେମୁଳ,　　ଗୃର, ସହକାର
ଘାଦପୁଁ ଉଠିଲା　　ଝିଙ୍କାର ଝିଙ୍କାର ।
ବହୁଶାଖ-ବଟ　　ଗହଳ ପଲ୍ଲବେ
ଚଞ୍ଚୁ ମେଲି ପିକ　　ଲୁଚିଛି ମାରବେ ।
(୩) ମହୁଲ ବୁରେଇ　　ଜଗି ଘାଏ ଘାଏ
କପୋତ କୁଁ କୁଁ-କୁଁ-　　ସାରଙ୍ଗୀ ବଜାଏ ।
ଥରେ ଥରେ ଲତା-　　ବୃତ ଗୁଳ୍ମ ତଳୁ
(୪) ସ୍ୱବଦ୍ଧଏ ଚମ୍ପା　　ଠିକ୍ କଲୁ, ଠିକ୍ କଲୁ ।
କାହାକୁ କହେ ସେ　　କେଉଁ ଗୁଣ ଦେଖି
ଚମ୍ପା ମନୋଭାବ　　ନପାରିଲି ଲେଖି ।
ସହସା ଶ୍ରବଣେ　　ଶଙ୍ଖ-ଘଣ୍ଟ ସ୍ୱନ
ବାଜିବାରୁ ମନ　　ହେଲା ଛନ ଛନ ।
ଘଟନାଟି କହି-　　ଦେଲା ସ୍ମୃତି-ରାଣୀ
ମନ୍ଦିର ପ୍ରତିଷ୍ଠା-　　ସମସ୍ତ ହେଲାଣି ।
ଜାଠରିକ କ୍ରିୟା　　ତୁଟାଇ ଝଟତି
ଦେବଦହ ଦଗେ　　କଲି ତହୁଁ ଗତି ।
ପ୍ରତିଷ୍ଠା ବ୍ୟାପାର　　ନାହିଁ ଅବଶେଷ-
ଦୃଶ୍ୟ ସ୍ଥଳେ କଲି　　ଯେ କାଳେ ପ୍ରବେଶ ।
(୫) ବାରୁଣୀ ବାଳାର　　ହେମଛବ ଘରେ
(୬) ପଶିଲେ ରସିକ-　　ରବ ପ୍ରେମଭରେ ।

(୧) ଛକା—ସ୍ତ୍ରୀ ଖେଳବିଶେଷ । (୨) ଗଣ୍ଡା—ଗ୍ରାମ ଚୌକିଦାର । (୩) ବୁରେଇ—ଜଙ୍ଗଲି ଝୋଟା । (୪) ଚମ୍ପା—ଚଁପା, ବୁଲ୍‌ବୁଲ୍ ପକ୍ଷୀ । (୫) ବାରୁଣୀ—ପଶ୍ଚିମଦିଗ, ବେଶ୍ୟା । (୬) ରସିକ—ରସଗ୍ରାହୀ, ଲମ୍ପଟ ।

(୧) ସନ୍ଧ୍ୟା-କାମସେଣୀ ଅନ୍ଧାର-କବାଟ
ପକାଇ ଅଟକ କରି ଦେଲା ବାଟ ।
ଦେଖି ନାରକାପ୍ସ- ଗୁଳୁଗୁ ସନ୍ଧ୍ୟାର
ଦଳଦଳ ପକ୍ଷୀ କଲେ ଛିଛିକାର ।
ଉଡ଼ି ଉଡ଼ି ଧିକ୍କା- ରିଲେ ଚମଚଟା
ଫୋଡ଼ୁ ଲେ ପାପିନୀ, ତୋର ପାପଛଟା ।
ପାପ ହେବ ବୋଲି ତୋ ମୁଖ ଦର୍ଶନେ
ଚକ୍ଷୁ ବୁଜି ତେଣୁ ସାଧୁ ଭକ୍ତ ଜନେ
ପ୍ରାଚୀ ଅଭିମୁଖେ ନୀରବେ ନଷ୍ଟଲେ
ବସିଥାନ୍ତି ବ୍ରହ୍ମ- ଉପାସନା ଛଳେ ।
ସବୁ ମୁଖୁଁ ସନ୍ଧ୍ୟା ପାଇ ନିନ୍ଦା ଗାଳି
ମୁହଁଟା ଶୁଖାଇ ହଟିଗଲା କାଳୀ ।

ନୀରବନ୍ତେ କ୍ରମେ ପିକ କାକ ଶୁକ
(୨) କୁଜନ ନିଃସ୍ୱନେ ବାହାରିଲା ଘୂକ ।
(୩) ସତେ ଯେହ୍ନେ ଘନ ବନଦୁଃଖିତର
ଦୁଃଖରେ ଦୁଃଖିତ ସେ ଅଧିକତର ।
ସମ୍ମୁଖରେ ଦୁଃଖୀ ଭାସି ଦୁଃଖଜଳେ
ବଳପୂର୍ବୁଥିଲେ ନେ ଜୀବନ ବଳକଲେ,
ବିଳାସୀ ହୃଦରେ ନ ଭେଦଇ ତାହା
ନ ବାହାରେ ତାର ମୁଖୁଁ ଶୁଷ୍କ ଆହା ।
ନିଜ ଗୁଣେ ଏହ୍ନି ଭାବକୁ ପ୍ରକାଶି
ତାରା-ମୁକ୍ତାହାର ଖଣ୍ଡ-ଶଶୀହାସୀ-
ଯାମିନୀ-କାମିନୀ ଚକଚକ-ଅଙ୍ଗୀ
ଅଇଲା ବସ୍ତ୍ରାର ଜକଜକ-ଭଙ୍ଗୀ ।
ଗତ ରାତ ପର ନାଟ୍ୟ ସଙ୍କୀର୍ତ୍ତନ
ଯେଝା ସ୍ଥାନେ କଲେ ନୃତ୍ୟ ପ୍ରଦର୍ଶନ ।
ପ୍ରକୃତି-ନର୍ତ୍ତକୀ ଶୋଇଥିଲା ଥକି
ସପନ ଦେଖି କି ଉଠିଲା ଚମକି ?

(୧) କାମସେଣୀ—କୁଟ୍ଟଣୀ ସ୍ତ୍ରୀ । (୨) ଘୂକ—ପେଚକ । (୩) ବନଦୁଃଖିତ—ଚକ୍ରବାକ ।

ପ୍ରତିଧ୍ୱନି ରୂପେ ବାକ୍ୟଦେବୀ ସଙ୍ଗ
ଭାଙ୍ଗିଦେଲ ବନ- ଗିରିର ଜଡ଼ତା ।
ଜଡ଼ତା-ନାଶିନୀ ବାଗ୍‌ଦେବୀ ପଦ୍ମରେ
ମାଳା ଗୁନ୍ଥି ଦେବା- ଲାଗି ଭକ୍ତିଭରେ
ମାନବ ପ୍ରକୃତି- କୁସୁମ ଚୟନେ
ଲାଗିଲି ଯେତିକି ପଡ଼ିଲା ନୟନେ ।
କେତେକ ଗ୍ରାମର ନାଟ୍ୟ-ସଙ୍ଗୀତର
ରସେ ନ ରସିଲା ମାନସ ମୋହର ।
(୧) ବନ୍ଧାର ସଙ୍ଗୀତ ଦେଖିଥିଲି ଷଣେ
ଚନ୍ଦ୍ରାଦେବୀ ନୃତ୍ୟ କଲେ ମୋ ଈକ୍ଷଣେ ।
ଦୁର୍ଭେଦ୍ୟ ରହସ୍ୟ- ମଧ୍ୟ କେତେ ସ୍ଥାନ
ଭ୍ରମୁ ଭ୍ରମୁ ନିଶା ହେଲା ଅବସାନ ।
ନିର୍ଦ୍ଦନ୍ଦ୍ୱ ନିର୍ମ୍ମଳ ନୀରପଦ ସ୍ଥଳ
ଖୋଜୁଁ ଖୋଜୁଁ ହୃଜ- ଗଲା ଧୈର୍ଯ୍ୟବଳ ।
ଦୋକାନୀଟାକୁ ମୁଁ କଲି ଅନୁନୟ
ସୁକିଟିଏ ନେଇ ଦେବାକୁ ଆଶ୍ରୟ ।
ବହୁକଷ୍ଟେ ସେହୁ ରାଜିଲା; ଦୋକାନେ
କ’ ଶୁଅନ୍ତୁ ଯାହା ବାଜିଲା ମୋ କାନେ ।
ନିଜାଣିଲା ପରି ରହି ଚୁପଚାପ
ସହିନେଲି ଗୁପ୍ତ- ମଜା ପ୍ରେମାଳାପ ।
ଭାବିଲି ନିର୍ଦ୍ଦନ୍ଦ୍ୱ ସ୍ଥାନ କାହିଁ ଆଉ ?
ଯହିଁ ଶିବ ତହିଁ ଶିବାରିର ଦାଉ ।
କେ କହେ କାମକୁ ଦହିଲେ ଶଙ୍କର ?
ଶଙ୍କର ନିଜେ ତ’ ଭସ୍ମ କଳେବର ।

ହବାନାଥ ପୁରେ ଯିବାପାଇଁ ଖଟି
ହଲପିଲା ଉଷା- ଘୋଷା ପିକକଣ୍ଠୀ ।
ହଗାଲୀ ଆବଳୀ ପ୍ରତିଧ୍ୱନି ଛଳେ
ପ୍ରବୋଧିଲେ ଭସି ଶିଶିରାଶ୍ରୁ ଜଳେ ।

(୧) ବନ୍ଧା—ବରଗଡ଼ ଥାନାନ୍ତର୍ଗତ ଗ୍ରାମବିଶେଷ ।

ପ୍ରକୃତି-ଜନନୀ ପ୍ରଭାତ ଶୋଭାରେ
ପାତେ ସଜାଡ଼ିଲ୍ ପଠିଆଣି ଘରେ ।
ଶ୍ରୀଫଳ, ଅମୃତା, କେନ୍ଦୂ, କଷି ଗୂର
ଫଳ ସଙ୍ଗେ ବଣ- ମଲ୍ଲିକାର ହାର ।
ଅଧିତ୍ୟକା-ଖଣ୍ଡ ଗୁଞ୍ଜ-କୁଞ୍ଜ-ଶଯ୍ୟା
ଦେଖୁ ଦ୍ରବ୍ୟ ଯେତେ ହୋଇଗଲା ଖଞ୍ଜା ।
ମଠ ହେବ ବୋଲି ରଙ୍ଗ ପାଟ ଶାଢ଼ୀ
ଝଟତି ଝିଅର ଲାଗି ଦେଲା କାଢ଼ି ।
ଜନନୀ ଚରଣେ କରଣି ପ୍ରଣତି
ବାହାରିଲା ଧୀରେ ଊଷା-ଜ୍ୟୋତିଷ୍ମତୀ ।
ବଧୂ ସହଯାତ୍ରୀ ସ୍ୱରୂପେ ସମୀର
ଗନ୍ଧ ବହି ଗତି କଲା ଧୀର ଧୀର ।
ଜଳ ଅଗ୍ନିଦେବ ସେ ସଙ୍ଗେ ଶ୍ରଦ୍ଧାରେ
ବାହାରିଲେ ବାଷ୍ପ- ଦାବ-ଧୂମାକାରେ ।
ଝଟକ ବାଦଲ ରୂପେ ଲଭି ମୁଦ
ସ୍ୱଗୁଁ ବାହାରିଲେ ସକଳ ବିବୁଧ ।
ଭୋଜ ପ୍ରାପ୍ତି ଆଶା ହେଳ ଦ୍ୱିଜଗଣେ
ବାହାରିଲେ ପେଟ- ଜ୍ୱାଳା ନିବାରଣେ ।
ଝିଙ୍କାର-ଝୁଣ୍ଟିଆ- ଲଗା ଊଷା ପାଦ
ଚଳାଇଲା ପ୍ରାତଃ- ଶୁଭ ଶଙ୍ଖନାଦ ।
ମଧୁପ-ଶଙ୍ଖୁଆ ହୁଇଁ-ହୁଇଁ-ନାଦେ
ପଥ କଡ଼ାଇଲା ପରମ ଆହ୍ଲାଦେ ।
ସେହି ସଙ୍ଗେ ଦେବ- ଦହ ରଙ୍ଗୋତ୍ସବ
ଅପୂର୍ବ ଉତ୍ସାହେ ଯୋଗ ଦେଲା ଜବ ।
ରବି-ଊଷାଦେବୀ ନବୀନ ମିଳନେ
ନେତ୍ର ପୂତ ହେଲା ପଶ ହେଲା ମନେ ।
ପ୍ରାତଃ ନିତ୍ୟକର୍ମ ସାରି ତରତରେ
(୧) ପଶିଲି ବାପ୍ଧେନ ଗୂଢ଼ମାରଖରେ ।

(୧) ଗୂଢ଼ମାର୍ଗ—ଗହ୍ୱର ।

ସ୍ୱମୋହ-ତର୍ଯ୍ୟକ ଗହ୍ୱର ଭିତର
କି ବା ସେ' ଦେବ୍‌ଦହ- ଦେଖା କୋଠାଘର ?
ଚମତ୍କାରଙ୍କର ଗମନାଗମନେ
ସରକ୍ତ କୌତୁକ ମିଶିଯାଏ ମନେ ।
ମନ ପାଞ୍ଚେ ଗିରି- ଗର୍ଭୋପଳ ଗୃହେଁ
ମାଡ଼ିବସିବ କି ? ଧୈର୍ଯ୍ୟ ବୋଲେ 'ନାହିଁ' ।
ତଥାପି ବିଶ୍ୱାସ ନକଲା ମାନସ
ମାନସର ପିଶୁ ଧରିଲା ସାହସ ।
ବାହାରିଲା ଖୁଣ୍ଡି ନପାରି ସମ୍ଭାଳି
ଉତ୍ପୁ-ବିକମ୍ପିତ ଧୀର ପଦ ଗୃଳି ।
ଗୁମ୍ଫା ସମ୍ମୁଖୀନ- ସମୁଚ୍ଚ ଶିଳାରେ
ଉପବିଷ୍ଟ ହେଲା ମତ୍ସ୍ୟ ବିଦ୍ରୁଖାରେ ।
ଦେଖିଲା କୁମ୍ଭୀର ଭାସୁଛି ଦେବ୍‌ଦହେ
(୧) ଖଣ୍ଡାଧାର ନଭ ବନ୍ଧୁର ବିଗ୍ରହେ ।
ମଗ୍ନ-ସନ୍ତରଣେ ରଖି ହଂସ୍ର ଛଟା
ଅଲକ୍ଷିତ ଭାବେ ଦେଖାଏ ମୁଣ୍ଡଟା ।
ସୃଜିଦିଏ କାହିଁ ବୃହଲ୍ଲକ୍ଷ୍ୟ ଟାଲ
ସ୍ୱମ ପ୍ରସାରିତ ଲହରୀର ଜାଲ ।
(୨) କାହିଁ ଜଳଭୁଆ ଗୁହା ସମ୍ମୁଖରେ
ଦେଖାଦେଇ ଜଳେ ପଶିଯାଏ ଖରେ ।
ଦୋଳୁଛି ଦେବ୍‌ଦହେ ହୀରକ ଲହରୀ
ଭକ୍ତହୃଦେ ହରି ପ୍ରେମାମୃତ ପରି ।
ଅନାଇ ଖୁଷଣ ତୁଙ୍ଗ ଶୃଙ୍ଗଧର
ମଧୁରହିତ ତୋ ଭୃଙ୍ଗ-ରାଜଧର ।
ସ୍ଖଳନ-ଉନ୍ମୁଖ ଶୃଙ୍ଗ ବିଲୋକନେ
ଠେଲିଦେଲା ପରି ଲାଗୁଥାଇ ମନେ ।
ଖଣ୍ଡ ଖଣ୍ଡ-ଉଚ୍ଚ ଗଣ୍ଡ ଶୈଳ ଧାଡ଼ି
ହୋଇଅଛି ଯେହ୍ନେ ବନ୍ୟ ପାରାବାଡ଼ି ।

(୧) ଖଣ୍ଡାଧାର—କରତ । (୨) ଜଳଭୁଆ—ଉଧ ।

କାହିଁ ସମାଗତ ବସ୍ତର ପ୍ରସ୍ତର
କାରୁକାର୍ଯ୍ୟ ବନ୍ଧ ହୋଇ ସ୍ତର ସ୍ତର ।
କଳ୍ପନାରେ ଫୁଟି ପଡ଼ୁଅଛି ସ୍ପଷ୍ଟ
କେବା ସେ ପ୍ରକୃତ ପ୍ରାସାଦ-ପାବଚ୍ଛ ।
ଦେଖି ବଣଜନ୍ତୁ- ଗ୍ରାବ ଓରଷ୍ଟିନ
ସ୍ମୃତି ରେଖେ ଭସ୍ମ ଭାବ ଚରଦାନ ।
ମହୁଲ, ପଳାଶ, ବେଲ, କଇ, କେନ୍ଦୁ,
(୧) ହରଡ଼ା, ବାହାଡ଼ା, କୁସୁମ, କାକେନ୍ଦୁ,
ସର୍ଗି, କୁଚେଇ, ଭେରୁଁ, ଅଏଁଳା, ଗମ୍ଭାରି,
କରଲା, କରଞ୍ଜ, ଖରୁଲ, ସୁନାରି,
ଧାମନ, ବାନ୍ଧନ, ସାହାଜ, ଭେଲୁଆଁ,
ଧଉଁରା, ଧାତୁକ, କୁରୁଲୁ, କୁରୁଆଁ,
ଖଇର, ଖଇପ, ହଲନ, ଆଁକେଲ,
ବେକକଠ, ଶାଳହା, ଧୂବନ, ପାଁଟକଲ,
ଶେମେଲ, ପାଟେଳ, ବାଞ୍ଜି, ମୁଣ୍ଡି, ଗୁର,
ଆଁଳି, ବଳଦଆ, ମୁଖା, ଲଣ୍ଡିଗୁର,
ଘଁଟୋ, ଶିଶୁ, ଝଜା, ସେଦ୍ଧା, ପଣପଣା,
ଗୁଞ୍ଜି, ବାଇଡ଼ଙ୍କି, ଲଠିବୁଟେଭଣା—
ହୁରଙ୍ଗି, ଏ ଆଦି ଚନ୍ଦୁଲତାକୁଳ
ଘେନ ଭୃଙ୍ଗରାଜ ମଣ୍ଡିଛି ତୋ କୂଳ ।
ଦେଖିଲି ଆବର ତୋ ତୀର ପ୍ରାଚୀର
ଚିର ବୃନ୍ଦ ଦୃଶ୍ୟ ଦାନୁଡ଼ଚଡ଼ର ।
ଦେଖି ସେହିପରି ଭଙ୍ଗା ଶୋଭା ଠାଣି
ନେଲ ଗୋ ମୁରଙ୍ଗି, ସେକାଳେ ମେଲାଣି ।
ଏତେ ଆସିଥିଲି ଭକ୍ତି-ଶ୍ରଦ୍ଧାବେଶେ
ତୋ ବୃନ୍ଦ ଚରିତ ଚୟଣ ଉଦ୍ଦେଶ୍ୟ ।
ତୁ ଯିନା ଗଟିନ, ନାନା ବାଧାବନ୍ଧ
ଶଙ୍କଟରେ ତଳେ ନୋହି ଉଦବନ୍ଧ,

(୧) କାକେନ୍ଦୁ—ମାଙ୍କଡ଼କେନ୍ଦୁ ।

ଯୁଝି କାଳ ସଙ୍ଗେ ରଜନୀ ଦିବସ
ଲଭିଛୁ ଜୀବନେ ସିଦ୍ଧି ପୁଣ୍ୟ ଯଶ ।
ମୁଁ କେମନ୍ତେ ସେପରି ଚିନ୍ତାକୁଳ ମନେ
ଅଶାନ୍ତି-ଦୁର୍ଗତି- ଜଡ଼ିତ-ଜୀବନେ,
ଫୁଟାଇ ପାରିବି ତୋର ମୂର୍ତ୍ତି ଛବି
ଶକ୍ତି ମୋର କାହିଁ ? ସଚିତ-ସାଧବି !
ଯାହାହେଉ ଖଣ୍ଡି- ଆଲେଖ୍ୟ ତୋହର
ଛବି ଚରିତାର୍ଥ ହେଲା ମୋର କର ।
ନୁହଇ ମୁଁ କବି, ପ୍ରତିଷ୍ଠ ଲେଖକ
ଅବା ଉଚ୍ଚ-ଶିକ୍ଷା- ପ୍ରାପ୍ତ-ସୁପାଠକ ।
ଶିଶୁଖେଳା ଭଳି ଶ୍ୱେତ ପଦ୍ମାସନା
ସେବାରେ ଆବାଲ୍ୟ ବଳିଛି ବାସନା ।
ହେଲେହେଁ ମୁଁ ବାଣୀ ନଗଣ୍ୟ ସନ୍ତାନ
ମୋ ଲେଖକେ ହୁଏ କମଳାଙ୍କ ସ୍ନାନ ।
ଧୈର୍ଯ୍ୟଧ୍ୱଂସୀ ବେଗେ ପ୍ରାଣ ଖରସ୍ରାନ୍ତ
ମାନସ ମୋହର ବିବ୍ରତ ବିଭ୍ରାନ୍ତ ।
ଘେରିବାକୁ ବେଶି ଦୁଃଖଶୋକ-ହକ୍କା
ଦୁର୍ଭାଗ୍ୟ-ଝଞ୍ଜ୍ୟଠା ଆଣିଅଛି ଠିକ୍କା ।
ଅନୁଢ଼ଶାଳେ ମୋ ଦେଖିବାକୁ ମୁଖ
ସଭିଙ୍କ ପଛଲେ ଜଗିଥିଲା ଦୁଃଖ ।
ସୁରଙ୍ଗି ଗୋ, ସେଇ ଦୁଃଖର ଆଶ୍ଳେଷେ
ଚିର ବନ୍ଧ ମୁହିଁ ଯନ୍ତ୍ର ହୋଇ କ୍ଳେଶେ ।
ପ୍ରାଣ ମୋର ହୋଇ ଗଲାଣି ପଥର
ନେତ୍ର ଯେମନ୍ତେ ଅଶ୍ରୁ ଜଳର ନିର୍ଝର ।
ଆଗରୁ କେତେକ ବଡ଼ ବଡ଼ ଭାଇ
ଯାଇଛନ୍ତି ବୋଲି ଭାଗ୍ୟଦୋଷ ଗାଇ ।
ଅନୁକରଣ ଏ ନୁହେ, ଅନିବାର
(୧) ଶ୍ରୀକରଣର ସ୍ୱତଃ ଅଶ୍ରୁଧାର ।

(୧) ଶ୍ରୀକରଣ—ଲେଖନୀ, କଲମ ।

ଲଭିଅଛି ସିନା ନରଜନ୍ମ ମଣି
ନଲଭି ଭାଗ୍ୟ ମୋର ଦୁଃଖ-ବିଷେ ଫଣୀ ।
ଜୀବନ ମୋହର ନାନା ଅଶାନ୍ତିର
ହୋଇଛି ନର୍ତ୍ତନ- କୁର୍ଦ୍ଦନ-କୁଟୀର ।
ନିରନ୍ତର ମୋର ଅନ୍ତରାତ୍ମା-ଯନ୍ତ୍ର
ଉଠୁଛି ଉଚ୍ଚାରି ହାହାକାର-ମନ୍ତ୍ର ।
ପଣ୍ଡିତ ସିନା ମୁଁ ଶୂନ୍ୟ ମାୟାଗାରେ
କିସ ଅଛି ମୋର ଜୀବନ-ସଂସାରେ ?
କାହିଁ ହର୍ଷ-ରବି ସୁଖ-ଚନ୍ଦ୍ରମା ?
ଘୋଟିଅଛି ନିତ୍ୟ ନୈରାଶ୍ୟ-ଅମା ।
ଭବିଷ୍ୟତ ସୁଖ- ଶାନ୍ତିର ସୂଚନା
ଆଶା ଥିଲେହେଁ ତା ଆଶା ମରୀଚିକା ।
ଆଶା-ଦୃଷ୍ଟିରେ ଯା' ଦିଶୁଥାଏ ସୁନା
ହାତ ବଢ଼ାଇଲେ ପାଲଟଇ ଚୂନା ।
ଭାଗ୍ୟଦୋଷ ଏ କି ଦଇବୀ-ଠାପରି
ବୁଝି ନ ପାରେ ମୁଁ ଜ୍ଞାନ-ବୁଦ୍ଧି-ହରି ।
ଚଖାଇବାକୁ କି ଅସାର-ତିକ୍ତତା
ରଖାଇଛି ବିଧି ସଂସାରେ ମୋ ପନ୍ଥି ?
ମୋ ସଲଖେ ବିଧି ଥିବ ଯାକୁ ରଖି
ମୋ ଅନୁଭୂତି ସେ ପାରିବ ପରଖି ।
ଆସିଛି ଯେପରି କାନ୍ଦି କାନ୍ଦି ଭବେ
ବାହୁଡ଼ିବ ପୁଣି ସେ କ୍ରନ୍ଦନ ରବେ ।
ଦେଖି ପାରିବ କି ସୁଖର ଲପନ ?
ଦେଖିବାକୁ ଯାହା ନପାଏ ସପନ ।
ସରି ତ' ନଯିବ ଗୋ ସରିତ-ରାଣି !
କେତେ ଗାଇବି ମୋ ଦୁଃଖର କାହାଣୀ ।
ଯାଉଛି ସୁରଙ୍ଗି, ଘେନ ନମସ୍କାର,
ସେ ସଙ୍ଗେ ଲେଖନୀ- ଅଶ୍ରୁ-ମସି ଗାର ।



# ଅଭିମତ

ପ୍ରିୟ ଖଗେଶ୍ୱର ବାବୁ,

ଆପଣଙ୍କର 'ଧନ୍ୟ-କଳିକାଳ'ର ରଚନା ମୋତେ ସୁନ୍ଦର, ସରସ ଓ ଚମତ୍କାରି ବୋଧ ହେଲା । ପଦଗୁଡ଼ିକ କୌତୂହଳୋଦ୍ଦୀପକ-ଭାଷା-ଭାବରେ ଲିଖିତ ହୋଇ ମନୋହର ହୋଇପାରିଅଛି ।

କେତେକ ପଦର ବର୍ଣ୍ଣନା ଏପରି ହୃଦୟଗ୍ରାହୀ ହୋଇଅଛି ଯେ ମୁଁ ବାରମ୍ବାର ପଢ଼ି ଆମୋଦ ଉପଭୋଗ କଲି ।

ପାଠକମାନଙ୍କର କୌତୂହଳ-ବୃତ୍ତି ଚରିତାର୍ଥ ପାଇଁ ଆଉ କେତୋଟି ପଦ ବୃଦ୍ଧି କରି ପାରିବେ କି ?*

ବରପାଲି
୫-୭-୩୯

ଆପଣଙ୍କର
**ରାଘବ ମିଶ୍ର**

---

* ମନ୍ତବ୍ୟଦାତାଙ୍କ ଅନୁରୋଧ ରକ୍ଷା ସତ୍ତ୍ୱେ ପ୍ରାୟ ଅର୍ଦ୍ଧାଂଶ ପଦ ପରିବର୍ଜନ କରାଯାଇଅଛି । —ଲେଖକ ।

# ଉପହାର

(ରାଗ—ଶଙ୍କରାଭରଣ)

ଘେନା, ହେଉ ନିବେଦନ,
ହେ ଉତ୍କଳ ଗ୍ରାମାଧିପ ଫକୀରମୋହନ ! । ଘୋଷା ।
ଲୁଚି ଥିଲେହେଁ ସୁପୁଷ୍ପ ଗୁଳ୍ମ-ଅନ୍ତରାଳେ
ନିଜ ଗନ୍ଧ ଯୋଗୁଁ ପଡ଼େ ଭ୍ରମର-ଜଞ୍ଜାଳେ ।
ହେୟୁ ସୁଧା ଉପାଦେୟୁ ମହତର କରେ
ରତ୍ନାକରେ ଅଭ୍ରଖଣ୍ଡ ଜକଜକ କରେ ।
ଏ ଆଶାରେ 'ଧନ୍ୟ-କଳିକାଳ' ପୁଷ୍ପହାର
ଗୁନ୍ଥି ଆଣିଅଛୁ ମଣି ପ୍ରୀତି-ଉପହାର ।
ସ୍ନେହ-ଦୃଷ୍ଟିପାତ ତୁମ୍ଭ ହେଲେ ଏଥିପ୍ରତି
ବଳବତୀ ଆଶା ମୋର ହେବ ଫଳବତୀ ।

ଆପଣଙ୍କର
ସୌଜନ୍ୟମୁଗ୍ଧ
ଶ୍ରୀ ଖଗେଶ୍ୱର ଶେଠ

# ଭୂମିକା

ମୋର ଅପ୍ରକାଶିତ ଲେଖାଗୁଡ଼ିକର ସମପ୍ରକାଶ-ବ୍ୟବସ୍ଥା ଦିଗରେ ମୋର ଯେଉଁ କେତୋଟି ବନ୍ଧୁ ସତ୍ପରେନାସ୍ତି ଚିନ୍ତିତ ଓ ଚେଷ୍ଟିତ, ସେମାନଙ୍କ ମଧ୍ୟରୁ ପ୍ରିୟବାବୁ ଶ୍ରୀଯୁକ୍ତ ଫୁଲଶର ପ୍ରଧାନ (ପାଣିମୋରା) ଅନ୍ୟତମ । ଏହାଙ୍କଠାରୁ ସୋହେଲା ଥାନାନ୍ତର୍ଗତ ଡବଡ଼ା ଗ୍ରାମର ଗୌନ୍ତିଆ ମହାଶୟଙ୍କର ସାହିତ୍ୟ-ରସିକତା ତଥା ଗୁଣଗ୍ରାହକତା ଗୁଣ ଏବଂ ମୋର ଅପ୍ରକାଶିତ ଲେଖା ଗୋଟିକର ମୁଦ୍ରଣ ବ୍ୟୟଭାର ବହନ କରିବାକୁ ସେ ସ୍ୱତଃ ପ୍ରବୃତ୍ତି ପ୍ରକାଶ କରିଥିବାର ପରିଚୟ ପାଇବାରୁ ଫଳରେ ମୋର କଳ୍ପନା-ଲତିକାର ଏହି 'ଧନ୍ୟ-କଳିକାଳ' କୁସୁମ ଗୋଟିକ ବହୁଦିନ ପରେ ଆଜି ପଦାକୁ ବାହାରି ପାରିଅଛି । ତନ୍ନିମିତ୍ତ ମୋର ଅନ୍ତରଙ୍ଗ ବନ୍ଧୁ ଫୁଲବାବୁ ଏବଂ ଉଦାରହୃଦୟ ଶ୍ରୀମାନ୍ ଫକୀରମୋହନ ଗୌନ୍ତିଆ ମହାଶୟଙ୍କଠାରେ ଗଭୀର କୃତଜ୍ଞତା ଜ୍ଞାପନ କରେଁ । ଇତି ।

ପାଣିମୋରା | ବିନୀତ
ତା ୨୦-୩-୮୨ ଇଂ | ଲେଖକ

# ଧନ୍ୟ-କଳିକାଳ

(ବୃତ୍ତ୍ୟନୁପ୍ରାସ, ରାଗ—ଆଷାଢ଼ଶୁକ୍ଳ)

ଧନ୍ୟ କଳିକାଳ,
ଧନ୍ୟ ତୋହର ଜାଲିଆ ଜଞ୍ଜାଳ ! (ଧ୍ରୁବପଦ)

(୧) ଲୁଚ୍ଛଇ ସତ୍ୟ- ନ୍ୟାୟର ମହିମା
ଉଚ୍ଚାଟ ମନେ ଗଢ଼ିଲୁ ବଡ଼ିମା;
(୨) ସୁଚ୍ଛତୁ ଦୃଶ୍ୟ ଦର୍ଶାଇଲୁ ପାପେ
ଧ୍ୱଂସଇ ଧର୍ମେ ଅର୍ଗିଲୁ ତୁ ଆପେ । ୧ ।

(୩) ଦ୍ୱୀପୀ ପରାଏ ଭାଙ୍ଗି ଧର୍ମ ଟେକ
ଚପିଲୁ ଆଗେ ବିବେକର ବେକ;
ଚିପିଲୁ ରାଜ- ମାନ୍ତ ସ୍ୱାର୍ଥ-କଳେ
(୪) ଥିପିଲୁ ପ୍ରଜା- ରକ୍ତ ଅଶ୍ରୁ ଛଳେ । ୨ ।

ନାନା ଖାଉଷ୍ଟ କୁସଂସ୍କାର ଆସି
ବାନା ତୋଳନ୍ତି ବୁଦ୍ଧିଜ୍ଞାନ ଗ୍ରାସି;

---

(୧) କଳିର ଆଗମନ କାଳରେ ସତ୍ୟ, ଶାନ୍ତି, ନ୍ୟାୟ, ଦୟା, କ୍ଷମାଦି ଦେବତାଗଣ ମର୍ତ୍ତ୍ୟଧାମରେ ଛପି ରହିବା ସ୍ୱର୍ଗତ ରାୟ ରାଧାନାଥ ରାୟ ବାହାଦୁରଙ୍କ 'ମହାଯାତ୍ରା' ମହାକାବ୍ୟରେ ଅନୁସନ୍ଧେୟ ।

(୨) ପାପର ପୂର୍ବରୂପ ସୁନ୍ଦର ଓ ମନୋହର ଦେଖାଯାଇଥାଏ । (୩) ଦ୍ୱୀପୀ—ବ୍ୟାଘ୍ର । (୪) ଥିପିବା—ବିନ୍ଦୁ ବିନ୍ଦୁ ଝରିବା (ସମ୍ବଲପୁରୀ ଭାଷା) ।

(୧) ଆନାସ୍ତୁ ଖେଳା- ହେଲା ଅନ୍ୟାସୁର
ଦାନା ପାଣିକି ଭୁଟିଲା ଧର୍ମର । ୩ ।

ପାପ ଉଦ୍ୟମେ ସାହାଯ୍ୟ ଅଧିକ
ଆପଣା ସାଧୁ ବୋଲାଇଲା ଧିକ;
କାପଟ୍ୟ ମିଥ୍ୟା ହେଲା ବ୍ୟବସାୟ
ତା' ପକ୍ଷେ ଯେଣୁ ଦେଖାଇଲୁ ଆୟ । ୪ ।

ପାଠରେ ଯେଣୁ ଶାଠ୍ୟ ଗଲା ଭରି
କାଠ ପଥର ପାଳନ୍ତିଲେ ହରି;
(୨) କାଠଶୁକତା ବହୁଲେ ଭୂମାତା
(୩) ଆଠ-ଦୋଅଣି ହରଷ ବଧାତା । ୫ ।

ଟଙ୍କା-ପ୍ରାବଲ୍ୟ ଅନ୍ୟାସୁରର ବର୍ମ
ଠକାମି ହେଲା ନବ୍ୟ ସଭ୍ୟ-ଧର୍ମ;
ଧକା ବାଜିଲା ସରଳ ସାଧୁଙ୍କୁ
ଦକାରେ କର୍ମ ଗଲା ଧର୍ମ ଗୁରୁ । ୬ ।

ମଦ ଅଫିମ ଗଞ୍ଜେଇ ଗଣିକା-
ସବନେ ଲୋକେ ହେଲେ ପ୍ରାଣଦକା;
ଖଦଡ଼ ଖଣ୍ଡେ ନ ପାଉଛନ୍ତି ଅଣ୍ଟା
(୪) ପଦ-ପରଶୀ ଗୃହ୍ୟଁନ୍ତି ମନଟା । ୭ ।

ପେଟର ଅଳସ ପେଟପୋଷା ଋଣୀ
ଡୋର କୌପୀନ ଭେକ ଧରି ପୁଣି;
ଡୋର ଇଙ୍ଗିତେ ମାଉଣ ଚମଟ
ଗୋରସ ଗଞ୍ଜା ପାଇଁ କଲେ ହଟ । ୮ ।

---

(୧) ଆନାସ୍ତୁ—କାଲ୍ । (୨) କାଠଶୁକତା—କ୍ଷୁଧାତୃଷ୍ଣା । ଭୂମାତା—ଗ୍ରାମର ଅଧିଷ୍ଠାତ୍ରୀ ଭୂଷିଣୀ ଦୁର୍ଗାଦେବୀ । (୩) ଆଠ-ଦୋଅଣି—ଟଙ୍କା । (୪) ପଦପରଶୀ—(ପଦସ୍ପର୍ଶୀ ଶବ୍ଦର ରୂପାନ୍ତର) କଣ୍ଠୁଗ ପ୍ରଭୁର ବଶୋଷଣ ପଦ ।

ନରକୁ ନର ଛୁଇଁ ହେଲା ଘୃଣ୍ୟ
(୧) ନରକାଶନ ତାହାଠାରୁ ପୁଣ୍ୟ;
(୨) ଧରମ ହେଲା ଅଦ୍ଭୁତ ଧାରଣା
କରମ ତଥା ଆଳସ୍ୟ ପାରଣା । ୯ ।

ଯାତରୀ ଯବେ ତୀର୍ଥ ସନ୍ଦର୍ଶନେ
ପାତକ ଯାଏ ଭାବଥାନ୍ତି ଜନେ;
ମାତର ତହିଁ ନେବ ପାଏ ଯାହା
ହାତ ନ ଚଳେ ଲେଖିବାକୁ ତାହା । ୧୦ ।

ଧରମ ନାମେ ଧନାଗମ ଦେଖି
ଶରମ କଲେ ସରମ ଉପେକ୍ଷି;
କରମ ଦେବ ଦୁର୍ବଳ ଯା ଭାଲେ
ପରମ ହର୍ଷେ ପଡ଼ିଲେ ସେ ଜାଲେ । ୧୧ ।

ସତୀତ୍ୱ ରଖା- ହେଲା ପରଦାରେ
ପତିତ୍ୱ ଦେଖା- ଗଲା ପର ଦାରେ;
ଅଗ୍ନି ଶପଥ ରୂପ ନେଲା ସତ୍ୟ
ରତି ସମ୍ଭୋଗ ଆଦର୍ଶ ଦାମ୍ପତ୍ୟ । ୧୨ ।

(୩) ପାଣି ପ୍ରଭେଦ ରଖିଲେ ଗିନାରେ
ହାଣିଲେ ପଶୁ- ପକ୍ଷୀ ଦେବା ନା'ରେ;
ଜାଣିଲା ପାପ- ଜାଲ ନ ଛିଣ୍ଡାଇ
ଟାଣିଲେ ପୁଣି ପରଜନ୍ମ ପାଇଁ । ୧୩ ।

ପଦ ନ ପଡ଼ୁଁ ପନ୍ଦର ବରଷେ
ମଦନ ଶର ମରମେ ବରଷେ;

---

(୧) ନରକାଶନ—କୁକୁର । ପୁଣ୍ୟ—ପବିତ୍ର ।

(୨) ମନୁଷ୍ୟକୁ ମନୁଷ୍ୟ ନ ଛୁଇଁବା, ସ୍ତ୍ରୀମାନଙ୍କୁ ସ୍ୱାଧୀନତା ନଦେବା—ଏପରି ଯେତେ ଅଦ୍ଭୁତ ଧାରଣା ଧର୍ମ ନାମରେ ଅଭିହୃତ ହେଲା ।

(୩) ଗିନା—କ୍ଷୁଦ୍ର କାଂସ୍ୟ ପାତ୍ର (ସମ୍ବଲପୁରୀ ଶବ୍ଦ) ।

ବଦନ ଭଙ୍ଗୀ　　ବଙ୍କିମ ଗ୍ରୀବାଣୀ
କଦନ କଲି　　ଯଉବନ ଠାଣି ।୧୪।

କମ୍ବୁ ନୁହଇ　　କଲି, ତୋ' କରମ
ଦମ୍ବୁ ହୁଅଇ　　ସରମେ ମରମ;
ରହିଛି ମସ୍ତି　　ସବଂଶତା ବୋଲି
(୧) ଅଶ୍ବତର କି　　ରଖନ୍ତା ଉତ୍ତୋଳି ।୧୫।

(୨) ବୋକ ଭାତ୍ରିମା　　ଗୁପ୍ତ ପ୍ରଣୟିନୀ
ଲୋକଦେଖାରେ　　ହେଉଛି ଭଗିନୀ;
(୩) ପୋକ-ଆଳୟ　　ସେ ପ୍ରେମର ଚିହ୍ନା
ତୋ' କଲ୍ପମତି　　କଲି, ଏହା ସିନା ।୧୬।

(୪) ରଞ୍ଜରଙ୍ଗିନୀ-　　ଭୋଗିନୀ ହୁଅନ୍ତେ
ଅନ୍ତଃସ୍ଥ ହେଲେ　　ରଜା ଜମିଦାରେ;
ପଣ୍ଡିଏ ସାଧୁ　　ମହା ବ୍ରହ୍ମଜ୍ଞାନ
ପତିତାନାକୁ　　କଲେ ପୁଣ୍ୟଦାନ ।୧୭।

'ଠାର ଛନ୍ଦା' ତୋ'　　ମନଭେଦୀ ଶର
ଜାର ଛନ୍ଦୀର　　ମୋହନ ମନ୍ତର;
ବାର ବନିତା　　କାମ କଳ୍ପତରୁ
ଖାଉ ମଖାଉ　　ଶାଠ୍ୟ-ପଙ୍କଜରୁ ।୧୮।

(୫) କର୍ଣ୍ଣ ଶୃଗାଳ　　ବଚନେ ଭୂଦେବ
ଧର୍ମର ଚିହ୍ନ　　ହେଲ ବାହ୍ୟ ଭେଖ;
ଚର୍ମ, ଗୈରିକ-　　ବସ୍ତ୍ର, ଜଟାଜାଳ
(୬) ଧର୍ମ-ଶୋଷକ　　ଆଉ ଜପାମାଳ ।୧୯।

---

(୧) ଅଶ୍ବତର—ବାସୁକି । (୨) ବୋକ—ଚୁମ୍ବନ । (୩) ପୋକ-ଆଳୟ—ମେହ-ଉପଦଂଶାଦି ରୋଗ । ଅନ୍ୟ ପକ୍ଷେ, ପୋ—ପୁତ୍ର; କ-ଆଳୟ—ବକ୍ଷଗୃହ ଅର୍ଥାତ୍ ଗର୍ଭସ୍ଥ ଶିଶୁ ପକ୍ଷେ ଜନନୀର 'ପାପଗର୍ଭ' ବଢ଼େଇବା ମୂଳ ।

(୪) ଭୋଗିନୀ—ରଜାର ରକ୍ଷିତା ସ୍ତ୍ରୀ ଓ ବେଶ୍ୟା । ମହା ବ୍ରହ୍ମଜ୍ଞାନ—ଲମ୍ପଟତା ।
(୫) ଭୂଦେବ—ବ୍ରାହ୍ମଣ । (୬) ଧର୍ମଶୋଷକ—ଭଣ୍ଡ ।

ଠକ ପାଷଣ୍ଡେ | ବହୁ ଭଣ୍ଡ ପକ୍ଷା
ବକର ଇଷ୍ଟ- | ବ୍ରତ କଲେ ଚନ୍ଦ୍ରା;
(୧) ରକତ ପିଣ୍ଡ | ଯୌବନେ ସଂହାର
(୨) ଭକଟା ହେଲେ | ବୃଦ୍ଧା ବାରନାରୀ । ୨୦ ।

ଓଲଟା ଧର୍ମେ | ରହିଲା ବିଶ୍ୱାସ
କୁଲଟା ପୁର | ହେଲା କ୍ରୀଡ଼ାବାସ;
ଭୁଲ-ଜ୍ଞାପକ | ହେଲା ପଞ୍ଚପାଣ୍ଡ
ତୁଳସୀ ବୋଲା- | ଇଲା ବନ୍ଧୁଆଣ୍ଡ । ୨୧ ।

ରାଧିକା କୃଷ୍ଣେ | ରଖି ଆଦରଶ
ସାଧିଲେ ଲୋକେ | ଗୁପ୍ତ ପ୍ରେମ ରସ;
ବାଧିତ କଲା | ପ୍ରେମ-ନବରଙ୍ଗ
ତାଁ'ଧିକ ଧିକ | ରଟିଲା ମୃଦଙ୍ଗ । ୨୨ ।

ଷଣ୍ଡ ଶାବକ | ଭୋକେ ଶୀର୍ଣ୍ଣକାୟୁ
(୩) ମଣ୍ଡପ ପୁଷ୍ଟ | ଗବ୍ୟ-ଦୁଗ୍ଧେ ହାୟୁ;
ମଣ୍ଡଳ-ରତ୍ନ | ହେଲେ ଅନାଦୃତ
ଦଣ୍ଡ-ନାଟୁଆ | ପୂଜ୍ୟ ପୁରସ୍କୃତ । ୨୩ ।

ଧରମ-ବୁଦ୍ଧି- | ଧନ ଧ୍ୱଂସକାରୀ—
ଦରବ ମୂଲ୍ୟ | ଦ୍ରବ୍ୟ ହେଲା ଭାରି;
ଗରଳୋପମ | ଅଫିମ ଗଞ୍ଜିକା
(୪) ପରସନ୍ନାଦ୍ଧ | ମଦ୍ୟ ମାଂସ ପିକା । ୨୪ ।

ଭାତ ବକର | ଚଳିଲା ବଜାରେ
ଲାତ ବାଜିଲା | ଅତିଥି-ପୂଜାରେ;
ବାତ ବା ପିତ୍ତ | ଯା' କହୁ ନାଡିକା
(୫) ହାତ ଛୁଇଁଲେ | ବଇଦକୁ ଟିକା । ୨୫ ।

(୧) ରକ୍ତପିଣ୍ଡ—ଗର୍ଭସ୍ଥ ଶିଶୁ ।(୨) ବାରନାରୀ—ବେଶ୍ୟା । (୩) ମଣ୍ଡପ—ଶ୍ୱାନ ।
(୪) ପ୍ରସନ୍ନା—ମଦ । (୫) ଟିକା—ଅଗ୍ରିମ ପାଉଣା (ସମ୍ବଲପୁରୀ ଶବ୍ଦ) ।

ଠକ ପାଷଣ୍ଡେ    ବହୁ ଭଣ୍ଡ ଘଷା
ବକର ଇଷ୍ଟି-    ବ୍ରତ କଲେ ଚନ୍ଦା;
(୧) ରକତ ପିଣ୍ଡ    ଯୌବନେ ସଂହାର
(୨) ଭକତା ହେଲେ    ବୃଦ୍ଧା ବାରନାରୀ । ୨୦ ।

ଉଲଟା ଧର୍ମେ    ରହିଲା ବିଶ୍ୱାସ
କୁଳଟା ପୁର    ହେଲା କ୍ରୀଡ଼ାବାସ;
ଭୁଲ-ଜ୍ଞାପକ    ହେଲା ପଞ୍ଚପାଞ୍ଚ
ତୁଳସୀ ବୋଲି-    ଇଲା ବିନ୍ଧୁଆଣି । ୨୧ ।

ରାଧିକା କୃଷ୍ଣେ    ରଖି ଆଦରଣି
ସାଧିଲେ ଲୋକେ    ଗୁପ୍ତ ପ୍ରେମ ରସ;
ବାଧିତ କଲା    ପ୍ରେମ-ନବରଙ୍ଗ
ତା'ଧିକ ଧିକ    ରଚିଲା ମୃଦଙ୍ଗ । ୨୨ ।

ଷଣ୍ଡ ଶାବକ    ଘୋଟକେ ଶୀର୍ଣ୍ଣକାୟ
(୩) ମଣ୍ଡପ ପୁଷ୍ଟ    ଗବ୍ୟ-ଦୁଗ୍ଧେ ହାୟ;
ମଣ୍ଡଳ-ରତ୍ନ    ହେୟୁ ଅନାଦୃତ
ଦଣ୍ଡ-ନାଟୁଆ    ପୂଜ୍ୟ ପୁରସ୍କୃତ । ୨୩ ।

ଧରମ-ବୁଦ୍ଧି-    ଧନ ଧ୍ୱଂସକାରୀ—
ଦରବ ମୂର୍ଖ    ଦ୍ରବ୍ୟ ହେଲା ଭାର;
ଗରଳୋପମ    ଅଫିମ ଗଞ୍ଜିକା
(୪) ପରସନ୍ନାଦ    ମଦ୍ୟ ମାଂସ ପିକା । ୨୪ ।

ଘୃତ ବଳକର    ଚଳିଲା ବଜାରେ
ଲୂତ ବାଜିଲା    ଅତିଥି-ପୂଜାରେ;
ବାତ ବା ପିତ୍ତ    ଯା' କହୁ ନାଟିକା
(୫) ହାତ ଛୁଇଁଲେ    ବଇଦଙ୍କୁ ଟିକା । ୨୫ ।

(୧) ରକ୍ତପିଣ୍ଡ—ଗର୍ଭସ୍ଥ ଶିଶୁ ।(୨) ବାରନାରୀ—ବେଶ୍ୟା । (୩) ମଣ୍ଡପ—ଶ୍ୱାନ ।
(୪) ପ୍ରସନ୍ନା—ମଦ । (୫) ଟିକା—ଅଗ୍ରିମ ପାଉଣା (ସମ୍ବଲପୁରୀ ଶବ୍ଦ) ।

ଗୁଣିଆଁ ହେଲେ ମୂରୁଖ ଅନାର୍ଯ୍ୟ
ଗୁଣୀ ଆଁ କର ରହିଲେ ସେ କାର୍ଯ୍ୟ;
ମୁଣିରୁ ଡୋର- ଉଡ଼ିଁଣିଆ କାଢ଼ି
ଝୁଣିଲେ ମନ୍ତ୍ର ଲାଜ ଭୟ ଛାଡ଼ି । ୨୬ ।

କ ରାମସାହି ହସ୍ତେ ତୋର ନ୍ୟସ୍ତ
ପିତାଙ୍କୁ ପୁତ ଠକିବାରେ ବ୍ୟସ୍ତ;
'ସୀତାରାମ' ଯାʼ ହୃଦୟର ହାର
(୧) ଚତା-ଶୋଭିତା ସଙ୍ଗେ ମଧ ତାର । ୨୭ ।

ଉପରେ ନାନା ହରିକଥା ଭାଷି
କୂପରେ ଠେଲି ମିଳିଲ ସାବାଷି;
ଉପକାରର ଉଚିତ ପାଉଣି
ଗୁପତ ଭାବେ ଚଳିଲି ମାଗୁଣି । ୨୮ ।

ଦାନର ଭାର ନେଲି ଖାଲି କଥା
ମାନ ରଖିଲି ଅହଙ୍କାର ତଥା;
ମାନବ ବୋଲି- ଇଲି ଜ୍ଞାନ-ବଳୀ
ଧାନ ନଗାଢ଼ ଦୁର୍ବଳଙ୍କୁ ଦଳି । ୨୯ ।

ଜୀବ ବ୍ରହ୍ମର ତତ୍ତ୍ୱ ତେଜି ବଣେ
(୨) ଜୀବନ୍ମୃତା ଭଜିଲେ ବ୍ରାହ୍ମଣେ;
ଶିବ ସେ ହେଲୁ ନ ସମ୍ଭାଳି ଭର
ଧବତ୍ୱ ହେଲେ ଉତ୍ତୋଳି ବରଙ୍କ । ୩୦ ।

ଅଶୀ-ବର୍ଷୀୟ ମୁମୂର୍ଷୁ ବ୍ରାହ୍ମଣ
ରସିକତାରେ ଦେଖାଉଛି ପଣ;
ବସି ପଲଙ୍କେ କାମ-ପ୍ରପୀଡ଼ିତ
କଣ୍ଠେ-ପ୍ରେୟସୀ- ପ୍ରେମେ ଆଲୋଡ଼ିତ ।

---

(୧) ଚତାଶୋଭିତା—ମାତାଙ୍କ ।
(୨) ଜୀବନ୍ମୃତା—ବୃନସ ।

ବାଳବିଧବା-    କାମନା ହୁତାଶ
ଜାଳଇ ହୃଦ,    ଯା' ଧୂମ ନିଃଶ୍ୱାସ;
(୧) କାଳକ୍ରମରେ    ଶ୍ୱସନ ରୂପରେ
(୨) କାଳ ହେଉଛି    ଦ୍ୱିଜାନ୍ତ ଉପରେ । ୩୨ ।

କନ୍ୟା ବିକ୍ରୟ    ସଉଦାର ଦରେ
ଧନ୍ୟା ତୋ' ମାତ    ବିସ୍ମୟ ମୁଖରେ;
ଅନ୍ୟାୟ-ଦ୍ୱେଷୀ    ଧର୍ମ୍ମ ଦେବତାର
ବନ୍ୟା ସୃଜୁଛି    ତେଣୁ ଅଶ୍ରୁଧାର । ୩୩ ।

ନୃପତିଗଣ    ଗଣ୍ୟ ହେଲେ ଜାରେ
ଭୂପତି ନୋହି    ଏକ ଭାରିଯାରେ;
କୃପଣ ହୋଇ    ରାଜ ଧର୍ମ୍ମ-ଧନେ
(୩) ଧ୍ରୁପଦ ଧରି    ମାତିଲେ ବ୍ୟସନେ । ୩୪ ।

ପଞ୍ଚାୟତର    ଭଦ୍ର ହେଲେ ଠକେ
(୪) ବଞ୍ଚାଇବାକୁ    ଉତ୍କୋଚ ଦାୟକେ;
କଞ୍ଚା ମିଛରେ    ନିମ୍ନେ ଗଢ଼ି ତାଳ
ସଞ୍ଚାର କଲେ    ଅର୍ଥ ଠଣା ଜାଲ । ୩୫ ।

ଭାଗ ଅସାମ୍ୟେ    ଭାଇ ଭାଇ କଳି
ରାଗରେ ପ୍ରାଣ    ଯାଉଅଛି ଜଳି;
(୫) ଲାଗ ଆହରି    ଲଗାନ୍ତେ ମାମଲା
(୬) ପାଗଳ କାର୍ଯ୍ୟେ    ଦୁହିଙ୍କ ମା ମଲା । ୩୬ ।

ସାକ୍ଷୀର ସାକ୍ଷ୍ୟ    ପୁଣ୍ୟାଂଶ ଟାଳୁଛି
ଆଖି ବିରୋଧେ    ଯେହେତୁ ଗାଳୁଛି;
ଲାଖିଅଛି ତ    ସ୍ୱାର୍ଥ ପାପେ ମନ
ମାଖିବ ନର୍କ    ଆଗେ ଅର୍ଜ୍ଜି ଧନ । ୩୭ ।

(୧) ଶ୍ୱସନ—ଶ୍ୱାସରୋଗ । (୨) କାଳ—ଯମ । (୩) ଧ୍ରୁପଦ—ସଙ୍ଗୀତର ଘୋଷା । (୪) ଉତ୍କୋଚ—ଲାଞ୍ଚ । (୫) ଲାଗ—ଋଣ (ସମ୍ବଲପୁରୀ ଶବ୍ଦ) । (୬) ମା—ସମ୍ପତ୍ତି, ଲକ୍ଷ୍ମୀ ।

ବଳିଷ୍ଟୁ ଋଣୀ ହୋଇ ସାହୁକାର
କଳ ଭିଆଣେ ଛାଡ଼ିଲା ହୁଙ୍କାର;
ଝଳିତ ଦୋଷ- ଋଣି ଧନକର
ମଳିନ ହେଲା ନ୍ୟାୟ-ଅଗୋଚର । ୩୮ ।

ପଶା-ତାମସା- ବେଶ୍ୟା-ନୃତ୍ୟ ରସେ
ଭସାଇ ଦେଲେ ଜୀବନ, ତାମସେ;
ରସା ସେହେତୁ ହେଲା ଶସ୍ୟହୀନା
ଦଶା ମନ୍ଦିଲା ଅନ୍ନ ଜଳ ବିନା । ୩୯ ।

ଚରଣ ଧୂଳି ଯାର ପୁଣ୍ୟଧନ
ଚରମ ଲାଗି ତା' ଅପନଧନ;
ଧରମେ ଆଦି- ମାତା ଯେ ହିନ୍ଦୁର
ମରମେ ତା'ର କି କଷ୍ଟ-ଭଦୁର । ୪୦ ।

'ଜଳ' ବର୍ଣ୍ଣର 'ଜୀବନ' ପ୍ରକୃତ
ମଳ ମୂତ୍ରରେ ହେବାରୁ ବିକୃତ;
ଫଳରେ ତାର ମେଲେରିଆ ମାରି
ଅଳପ ଦିନେ ଆୟୁ ନେଲେ ସାରି । ୪୧ ।

ହରିଭକ୍ତିରେ ଉପୁଜିଲା ହାସ୍ୟ
ଦରିଦ୍ରତାକୁ ବରିଲା ବିଳାପ;
ଚରିଲା ଶନ୍ତା- କାଠ ରୋଗ ଛଳେ
ସରିଲା ଆୟୁ ପଡ଼ି ପାପ-ଜଳେ । ୪୨ ।

(୧) ପବିତା ହେଲା ଅବି ରକ୍ତାର୍ଚ୍ଚନା
କବିତା ନେଲା ସ୍ତାବକ ରଚନା;
(୨) ଦ୍ରବ ଆଖ୍ୟାତ ହେଲା ଧୃଷ୍ଟିମେଦ
ଅବିଦ୍ୟା ମାତ୍ର ବୋଲାଇଲା ବେଦ । ୪୩ ।

(୧) ପବିତା—ଯେ ପବିତ୍ର କରେ । ଅବି—ଛେଳି । 'ଅଜାଡିଆ' ପ୍ରାଦୁର୍ଭାବରେ ଛେଳି, ମେଣ୍ଢା ମାରି କୁଳଦେବୀଙ୍କ ପୂଜା କରିବା କେତେକ ଜାତିର କୌଳିକ ପ୍ରଥା ଅଛି । (୨) ଧୃଷ୍ଟିମେଦ—ଦୃଷ୍ଟ ଶତର୍ଦ୍ଧି ।

ଗଲ ଗଣ୍ଡୁଚ୍ଛି ଗୋରସ ଲଢୁଣୀ
(୧) ଥଲ ଝୁଣ୍ଟୁଛି ସ୍ୱସ୍ଥାନେ ବାରୁଣୀ;
ବଳବର୍ଦ୍ଧକୁ ନ ମିଳଇ ଦର୍ଭ
(୨) ଦଳନ୍ତି ଦାନା ସ୍ୱଶାଳାରେ ଅର୍ବ । ୪୪ ।

(୩) ଭାଟକର୍ମୀଏ ଭୂମି ରାଜ୍ୟେ ରାଜ୍ୟେ
ନାଟ କଲେଣି ସାହିତ୍ୟକ ବ୍ୟାଜେ;
(୪) ବାଟକଣ୍ଟକେ କାଟି ଚଟା ଚୁଟି
ପାଟକନାରେ ସାଜିଲେ ଲେଙ୍ଗୁଟି । ୪୫ ।

(୫) କକ୍ଷରେ ବସି- ଥିବା କବିମାନେ
(୬) ତକ୍ଷକ ହେଲେ ଗର୍ବ ଅଭିମାନେ;
(୭) ଲକ୍ଷ୍ୟ ନରଖି ଲେଖକ ଦାୟିତ୍ୱ
ଅକ୍ଷର ଗଣି ଗଢ଼ିଲେ କବିତ୍ୱ । ୪୬ ।

(୮) କବିପଦେ ଯା ମୁଣ୍ଡ ଖଟି ନାହିଁ
(୯) କବି ପଦେ ସେ ହେଉଛି ଚହ୍ଲାଇ;

---

(୧) ବାରୁଣୀ—ମଦ୍ୟ । (୨) ଅର୍ବ—ଘୋଡ଼ା ।

(୩) ଭାଟ-କର୍ମୀ—ଯେଉଁମାନେ ସ୍ୱାର୍ଥ ସାଧନ ଆଶାରେ କବିତା ଛଳରେ ରାଜା ଜମିଦାରଙ୍କର ଅଯଥା ପ୍ରଶଂସା ବର୍ଣ୍ଣନ କରିଥାନ୍ତି ।.

(୪) ବାଟକଣ୍ଟକ—ମୁଣ୍ଡପିଠା ଦସ୍ୟୁ ।

(୫) ଯେଉଁମାନଙ୍କର ପଠନ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଅର୍ଥାତ୍ କେବଳ 'ଗୁଟଶାଳୀ'ର ବର୍ଣ୍ଣ ପରିଚୟରେ ଶେଷ । ଅନ୍ୟାର୍ଥରେ—ଯେଉଁମାନେ ଉଚ୍ଚବିଦ୍ୟାଳୟ କକ୍ଷ (କୋଠରୀ)ରେ ବସିଥିବା ହେତୁ ବଳପୂର୍ବକ କବି ପଦରେ ଅଧିକାରୀ ହୋଇଥାନ୍ତି ।

(୬) ତକ୍ଷକ—ପ୍ରଚଣ୍ଡପ୍ରଭାବ ସର୍ପବିଶେଷ; ବିଶ୍ୱକର୍ମା ଅର୍ଥାତ୍ ସବୁ ବିଷୟରେ ଯେ ସିଦ୍ଧହସ୍ତ ।

(୭) ଲେଖକ—ରଚକ; ଅମର ମସ୍ତକ ।

(୮) କବିପଦେ—କବିର କବିତ୍ୱରେ ।

(୯) କବି ପଦେ—କବି ପଦବୀରେ । ଅନ୍ୟାର୍ଥରେ, କବି ପଦକରେ—ପଦ୍ୟରେ

(୧) ଅବଦ୍ୟ ଆଜ ସୁସମ୍ଭାଲୋଚକ
ରବ ଦୁର୍ଗୁଣ ଗାଉଛ୍ଛି ପେଚକ । ୪୭ ।

ରଜା ତ' ନାହିଁ ସାହିତ୍ୟ-ରାଜ୍ୟର
(୨) ହଜାରେ କବୀ ବଜାରେ ହାଜର;
ବଜାଇଦେଲ୍ଲ ଯେହ୍ଣୁ ଏମ୍. ଏ., ବି.ଏ.
ମଜା ସେ କରୁ କହିବାକୁ କିଏ ? । ୪୮ ।

ବାସ ଭୂଷଣ ବେଶ ଢ଼ଙ୍ଗରଙ୍ଗେ
ହାସ ଜନ୍ମୁଛି ଲଗାଇଲେ ଅଙ୍ଗେ;
ପାସରେ ହ୍ରାସ ମାତୃଭାଷା ସୀମା
ଦାସଭ୍ତ ନେଲ୍ଲ ଶିକ୍ଷାର ଗରିମା । ୪୯ ।

ଙ୍କର ରକ୍ତର ନ ଦଶିଲ୍ଲ ସତ୍ତ୍ୱ
ଶିର ମୋଡ଼ିଲ୍ଲ ନୈତିକ ନସ୍ତେଜତା;
ମାର ଶୋଷିଲ୍ଲ ଚଣ୍ଡ ମାର୍ତ୍ତଣ୍ଡର
କରଣିକୁ ଏ ଭାରତଖଣ୍ଡର । ୫୦ ।

ଭାରତବାସୀ ଦେବଦେବୀଗଣ
ସାର ମଣିଲେ ନର୍ଜୀବ ଲକ୍ଷଣ;
ଆରତେ କେହି ଗଲେ ତାଙ୍କ ପାଶ
ଧାରଣା ଫଳେ ଲଭ ନଇରାଶ୍ୟ । ୫୧ ।

---

(୧) ଅବଦ୍ୟ—ମୂର୍ଖ ଏବଂ ଅପ୍ରକାଶ ।

ଆଜକାଲ୍ କେତେକ ସମାଲୋଚକ ବାହାରିଛନ୍ତି, ଯେଉଁମାନେ ଆପଣାର ମୁଖ୍ୟ ନାମ ପଦାରେ ପକାନ୍ତି ନାହିଁ । "ସମ୍ମାର୍ଜନୀ ହସ୍ତ" (ଝାଡ଼ୁଆ ବା ମେହେନ୍ତର) ଏହିପରି କେବଳ ଗୌଣ ନାମରେ ନିଜର ଗୁଣକର୍ମର ପରିଚୟ ଦେଇଥାନ୍ତି । ଅବଶ୍ୟ କେତେକ ପାଠକଙ୍କର ମନେ ଆଇପାରେ, ଲେଖକର 'ସଜନୀ' ନାମ୍ନୀ ପୁସ୍ତିକାର ସମାଲୋଚକ ମହାଶୟ ଏହି "ସମ୍ମାର୍ଜନୀ ହସ୍ତ" ଉପାଧିରେ ମଣ୍ଡିତ ଥିଲେ ।

(୨) କବୀ—ଯେଉଁମାନଙ୍କର ରଚନାରେ କେବଳ ଅନ୍ତ୍ୟବର୍ଣ୍ଣ 'ଜ'-'ଜ' 'ବ'-'ବ' ମିଳନ ବ୍ୟତୀତ ଅନ୍ୟ କିଛି ବିଶେଷତ୍ୱ ନାହିଁ ।

'ବାର-ବାରଣ'    'ଜାତି-ଅସ୍ପୃଶ୍ୟତା'
'ନାରୀ-ଲାଞ୍ଛନା'    'ଭ୍ରାତୃ-ବିରୁଦ୍ଧତା'
ଗୃହସଂହାର-    ଭ୍ରଷ୍ଟ ଭୂଦେବତ୍ୱ
ସାରିଲେ ପୂର୍ବ    ଭାରତ ମହତ୍ତ୍ୱ । ୫୨ ।

(୧) କେଳି, ଦେଖି ତୋ'    କେଳି ଭୟଙ୍କର
(୨) ବଳି ପ୍ରାଏ ମୁଁ    ଭୟରେ କାତର;
ତଳି ପଡ଼ୁଛି    ନେତ୍ରୁ ଅଶ୍ରୁଧାର
ନଳିନ ପରି    ମୋର ପରକାର । ୫୩ ।

ଭାରତେ ଯେତେ    ପାପ ଅତ୍ୟାଚାର-
ଧାର ବହୁଛି,    କାରଣ ତୁ' ତା'ର;
ଭାରତ ଛଡ଼ା    ଅନ୍ୟ ଦେଶେ କାହିଁ
ଗାର ତୋ' ନାମେ    ଯେଣୁ ପଡ଼ୁନାହିଁ । ୫୪ ।

ସଭ୍ୟତା ସୁଧା-    କର ଗ୍ରହ ତାରା
ଅବଚଳିତ    ଏ ସଭିଙ୍କ ଧାରା;
ପବିତ୍ର ଭୂମି    ଭାରତେ କେବଳ
(୩) ଫବିଲା ତୋର    କ୍ରୀଡ଼ା କଉଶଳ । ୫୫ ।

ଦୁରଦୃଷ୍ଟରୁ    ଘଟେ ଏ ଦୁର୍ଦ୍ଦଶା
(୪) ରୁରୁପ ହେଲେ    ନୃତ୍ୟ କଲି ଶଶା;
ମୂରୁଖ ଶାଠ୍ୟେ    ହାରିଲେ ଧାର୍ମିକେ
(୫) ଗୁରୁ ବନିଲେ    ଫୁତ୍କାର-ବୃତ୍ତିକେ । ୫୬ ।

---

(୧) କେଳି—କ୍ରୀଡ଼ା, କୌତୁକ । (୨) ବଳି—ଦେଖି ଆଗରେ ବୋଦା ଦେଇଥିବା ବନ୍ଧା ଜୀବ । (୩) ଫବିବା—ଶୋଭା ପାଇବା (ସମ୍ବଲପୁରୀ ଶବ୍ଦ)। (୪) ରୁରୁପ—ମୃଗରାଜ, ସିଂହ । (୫) ଫୁତ୍କାରବୃତ୍ତିକ—ଯେଉଁମାନଙ୍କର କେବଳ ଫୁଙ୍କିବା ବ୍ୟବସାୟ । ଯଥା—ଶଙ୍ଖଫୁଙ୍କା ପୂଜାରୀ ବ୍ରାହ୍ମଣ, ଚୁଲିଫୁଙ୍କା ରାନ୍ଧୁଣିଆ ବ୍ରାହ୍ମଣ, କାନଫୁଙ୍କା ବୈଷ୍ଣବ ଗୋସାଇଁ, ଦେହଫୁଙ୍କା ତାନ୍ତ୍ରିକ ଗୁଣିଆଁ ଆଦି ।

ହେଲଣି ବେଳ — କ ଅଛୁ ଭଲେଣି
ଟେଲ୍ଏ ଡ’ ଟୋ — ଟହ୍ଲା ପଡ଼ଲେଣି;
(୧) ଦେଲଣି ଦୃଷ୍ଟି — ଭାରତ ସ୍ୱାଧୀନେ୍ୟ
ମେଲଣି ନେବୁ — ଆଜ କଛୁ ଦନେ । ୫୭ ।



# ବିଷାଦ-ନିଶା

(ଅମିତ୍ରାକ୍ଷର ଛନ୍ଦ)

(୧) ବେଦାଙ୍ଗୀ ବାଙ୍ମୟୀ ଦେବୀ ଅନନ୍ତ-ଚରଣେ,
ବହୁଦିନୁ ଆସିଲଣି ଉତ୍କଳ ପ୍ରଦେଶେ;
ବିଲୋକିବ କି ମା, କିଞ୍ଚିତ୍ କରୁଣା-କଟାକ୍ଷେ,
ବିଦ୍ୟା-ଶକ୍ତି-ବିହୀନ ଏ ସନ୍ତାନେ ତୁମ୍ଭର !
ବୀଣାପାଣି, ନୁହେ ଏହା ନିଜ ମାତୃଶ୍ଲାଘା
ବୃଥା ପାକ୍ଷପତ୍ୟ କିମ୍ବା ଦୁରନ୍ତରଞ୍ଜନ;
ବିବିଧ ଶବ୍ଦାଲଙ୍କୃତା-ଉତ୍କଳଭାରତୀ
ବାଲ୍ୟକାଳୁଁ, ସାହିତ୍ୟରେ ଅପୂର୍ଣ୍ଣଯୌବନା,
ବାଜେଣି ସ୍ୱର୍ଣ୍ଣ ନୂପୁର-ପୂର୍ଣ୍ଣ ମିତ୍ରାକ୍ଷରେ
ବର୍ତ୍ତମାନ ନର୍ତ୍ତକୀ ସେ, ତାଙ୍କ ତୁଲେ କେହ୍ନେ
ବିଶୋଭିବ ବହୁପାଦ, ନିକ୍ୱଣ-ପଦରେ ?

ବାଣୀ ଶକ୍ତିମୟି, ମୋର ବାଣୀଶକ୍ତି କାହିଁ,
ବିଭ୍ରାଟ କରି ପାରିବ ପଦାବଳୀ ତୋର
ବିକଳ୍ପିତ ନବ୍ୟ ଛନ୍ଦ—ନବ୍ୟ ଅଳଙ୍କାରେ ?
ବିଗୃହିଛୁ ମଞ୍ଜୀରର ପରିବର୍ତ୍ତେ ଦେବି,
ବି-ପୂର୍ବାନୁପ୍ରାସ-ମଞ୍ଜୁ ଝୁଣ୍ଟିଆ ପିନ୍ଧାଇ
ବାଜୁଥିବ ଝୁମୁଝୁମୁ ପାଦ ସଞ୍ଚାଳନେ,

---

(୧) ଅନନ୍ତଚରଣେ—ଅମିତ୍ରାକ୍ଷର ଛନ୍ଦ ରୂପିଣୀ ବାଗ୍‌ଦେବୀଙ୍କ ପ୍ରତି ସମ୍ବୋଧନ ।

(୧) ବାରିମଗ୍ନ-କଣ୍ଠେ ଯଥା ପ୍ରାବୃଟ-ଝିଙ୍କାର ।
(୨) ବିପଞ୍ଚି-ଧାରିଣି, ଦିଅ ଶକତି-କୁଞ୍ଚିକା
ବାରେ ଉଦ୍‌ଘାଟିବି 'ଚିତ୍ରଶାଳା' ସାହିତ୍ୟର
ବିଷାଦ-ନିଶାର ଚିତ୍ର ପ୍ରଦର୍ଶନ ପାଇଁ ।
ବନାନ୍ତ-ସରଣୀ ମଣ୍ଡି ସ୍ୟନ୍ଦନ ତୁରଙ୍ଗ-
(୩) ବଲ୍‌ଗନେ, ଅଦୃଶ୍ୟପ୍ରାପ୍ତ ହେଲା ଗୃହୁଁ ଗୃହୁଁ ।
ବନଗମନେ ପରନ୍ତୁ ଅନିଚ୍ଛା-ସୂଚନା
ବ୍ୟକତ କରୁଅଛି, ତା' ଘର୍ଘର-ନିର୍ଘୋଷ-
ବିଳାପ, ଧ୍ୱଜମସ୍ତକ—ବିକମ୍ପନ ଛଳେ ।
ବାତ ନିଶ୍ଚଳ; ସ୍ଥଗିତ ସରଯୂର ଧାରା
(୪) ବାସରେ ଉଲ୍‌କାପାତି-ଅକାଳ-ଅନ୍ଧାର—
ବ୍ୟାପିଗଲା, ଅକସ୍ମାତେ ଅଯୋଧା ପ୍ରଦେଶେ ।
ବଜ୍ରନାଦେ ଅନାହତ-ଅଟ୍ଟାଳିକା ଚୂଳ
ବ୍ୟଗ୍ର ସ୍ଖଳିତ; ବଞ୍ଚକ ବିକଟ ଚିତ୍କାର—
ବାରମ୍ବାର; ପୁରେ ପୁରେ ମାର୍ଜ୍ଜାର କଳହ ।
ବିମୁକ୍ତକେଶା-ରକ୍ତାକ୍ଷୀ-କରାଳଦଶନା—
ବକ୍ରମୁଖୀ-ଚକ୍ରନଖା ଗୃମୁଣ୍ଡା ପ୍ରେତୁଣୀ
ବାହାରି ପ୍ରେତ ସଦନୁ, କିଳକିଳା ନାଦେ—
(୫) ବିଚ୍ଛନ୍ଦକେ ପଶି କଲେ ନର୍ତ୍ତନ କୁର୍ଦ୍ଦନ;
(୬) ବସତି-କୁଜ୍‌ଝଟି-ଭ୍ରାନ୍ତ-ବନ୍ୟପଶୁ ଯଥା ।
ବ୍ରାହ୍ମ ମୁହୂର୍ତ୍ତରେ ଯେଉଁ ଅଯୋଧା ନଗରୀ
ବିକଶାଇଥିଲା ହର୍ଷେ ଶ୍ରୀମୁଖ-ମଣ୍ଡଳ,
ବିଷାଦ ଲୋତକ-କାଳି ସହସା ତା' ମୁଖେ
ବୋଳିଦେବ ମନ୍ଦ ବିଧି, କିଏ ଥିଲା ଜାଣି ?
ବିଲୋକଣ ଅଯୋଧାର ଅଦ୍ଭୁତ ଦୁର୍ଦ୍ଦଶା
ବହୁକ୍ଷଣ ପରେ ସହି ନପାରି ତପନ

---

(୧) ବାରି—ଜଳ । ବର୍ଷାକାଳୀନ ଜଳାଶୟମାନଙ୍କରେ ମଗ୍ନାବସ୍ଥାରେ ଶ୍ରବଣ କଲେ ଏକପ୍ରକାର ଅସ୍ପଷ୍ଟ ଝିଁ ଝିଁ ଶବ୍ଦ ଅନୁଭୂତ ହୁଏ । (୨) ବିପଞ୍ଚି—ବୀଣା । (୩) ବଲ୍‌ଗନ—ଅଶ୍ୱର ପ୍ଲୁତଗତି । (୪) ବାସର—ଦିବସ । (୫) ବିଚ୍ଛନ୍ଦକ—ଦେବାଳୟ । (୬) ବସତି—ରାତି ।

ବିହ୍ୱଳେ ଚଞ୍ଚଳଗତି ଅସ୍ତାଚଳ ପ୍ରତି,
ବାହୁଡ଼ାଇ ସତେ ଯେହ୍ନେ ଆଣିବେ ଶ୍ରୀରାମେ ।
(୧) ବିନସ୍ପତି-ବାସୀ ବୁଲ-ବିହଙ୍ଗମଗଣ
ବିଭିନ୍ନ ତରୁଶାଖାରେ ହୋଇ ଉପବିଷ୍ଟ
ବସାସ୍ଥିତ-ପକ୍ଷୀପ୍ରତି ଚାହିଁ ଚକିତରେ
"ବୈଦେହୀ ରାଘବ କାହିଁ ?" ବିହ୍ୱଳେ ଜିଜ୍ଞାସା ।
ବେଳ କିଛି ଅତିକ୍ରମି ଉତ୍ତରିଲା ଏକ
ବଗ, ସମୁଡ୍ଡୀନ-ଶକ୍ତିହୀନ-ଜରାକ୍ଳିଷ୍ଟ—
ବନେ ପଶିଛନ୍ତି ରାମ-ଜାନକୀ-ଲକ୍ଷ୍ମଣ;
ବୁଝି ପାରିନାହୁଁ କିନ୍ତୁ ଉଦ୍ଦେଶ୍ୟ ତାଙ୍କର ।
"ବାରଣ ନକଲ କିପାଁ କାରଣ ନବୁଝି ?"
ବାକ୍‌ବିତଣ୍ଡା ଚଳାଇଲେ ଜିଜ୍ଞାସୁ ବିହଙ୍ଗେ
ବୃକ୍ଷୁଁ ବୃକ୍ଷାନ୍ତରାସୀନ ହୋଇ ବାରମ୍ବାର ।
ବେଳୁଁ ବେଳ ପ୍ରୋକ୍ତ ପ୍ରଶ୍ନ ଲଭି ସମ୍ବର୍ଦ୍ଧନ
ବେନଙ୍କର ଦଳେ କଲା କଳି-ସୂତ୍ରପାତ ।
ବର୍ଣ୍ଣିଟିଏ ଘେନ ପ୍ରଶ୍ନେ ଅଦ୍ୟାପି ସେ 'କଳି'-
ବିଘଟିତ, ସାୟଂକାଳ-ପ୍ରଥମାବସ୍ଥାରେ
ବୋଲନ୍ତି 'କାକଳି' ଯାକୁ କବି-ବୁଧଗଣ ।
(୨) ବୀକ୍ଷଣାଭିଳାଷେ ଅଭିଷିକ୍ତ ମିତ୍ର-ମୁଖ
ବୈହୁବେଳୁଁ ଆସି ହର୍ଷ-ପ୍ରଫୁଲ୍ଲ ବଦନେ
(୩) ବସିଥିଲେ ହସି ହସି ପ୍ରାଚୀପୁରେ ଶଶୀ ।
(୪) ବିଷ୍କିର-କୋଳାହଳରୁ ଶୁଣାଗଲା ଯେଣୁ,
(୫) ବନେ ପଶିଛନ୍ତି ରାମ ନାହିଁ ଅଯୋଧ୍ୟାରେ;
ବନବାସୀ ବେଶ ହେଲେ ଦେଖିଥିବି ବୋଲି
(୬) ବ୍ୟଗ୍ରୋତ୍ଥିତ ହେଲେ ବିଧୁ ଉପରୁ ଉପର ।
ବନବାସୀ ରାମ ବାର୍ତ୍ତା ଲଭି ରବି-ମୁଖୁଁ
ବାହାରିଲା ସନ୍ଧ୍ୟାବାଳା ବିଷାଦବଦନା,

(୧) ବିନସ୍ପତି—ରାଜୋଦ୍ୟାନ । (୨) ବୀକ୍ଷଣ—ଦର୍ଶନ । (୩) ପ୍ରାଚୀ—ପୂର୍ବଦିଗ । (୪) ବିଷ୍କିର—ପକ୍ଷୀ । (୫) ରାମ—ଚନ୍ଦ୍ରର ଅନ୍ୟତମ ନାମବିଶେଷ । (୬) ବିଧୁ—ଚନ୍ଦ୍ର ।

ବାରୁଣୀନନ୍ଦନା ଗିରିଗହ୍ୱରବାସିନୀ
ବିଳପିତା ଅଯୋଧ୍ୟାକୁ ସାନ୍ତ୍ୱନା ପ୍ରଦାନେ ।
(ବିଶ୍ୱସ୍ତ-ବନ୍ଧୁ ଅଗ୍ରତେ ଦୁଃଖୀ ଦୁଃଖିମାର
ବଢ଼ିଥାଏ ମନୋକଷ୍ଟ ଫୁଟି ଦ୍ୱିଗୁଣିତ ।)
ବିବାର୍ଯ୍ୟ କାରୁଣ୍ୟ-ଜଳ ଚକ୍ରବାକ-ସ୍ୱରେ
ବରଷାଇଲା, ଅଯୋଧ୍ୟା ସନ୍ଧ୍ୟାଦର୍ଶନେ
ବିହ୍ୱଳା ଗତି ନଗରୀ କରି ଉଲ୍ଲଙ୍ଘନ,
(୧) ବିହାୟସ-ଗର୍ଭେ ଯାଇ ସେ କାରୁଣ୍ୟ-ସ୍ୱର ।
ବିସ୍ମୟେ ଚେଣ୍ଟୋଇ ସ୍ୱନେ "କି ହେଲା କି ହେଲା"
ବୋଲି ବାହାରିଲେ ତାରାଚୟ ଗୋଟି ଗୋଟି ।
ବ୍ୟଥା ଅଯୋଧ୍ୟା-ପ୍ରାଣର, ଉପଲବ୍ଧି ବିନା
ବୋକାପରି ରହିଗଲେ ମିଟିମିଟି-ନେତ୍ରେ ।
ବିଷଣ୍ଣ ବଦନେ ଏଣେ ରାଜଭୃତ୍ୟବୃନ୍ଦ
(୨) ବର୍ତ୍ତୀକ୍ରିୟା ସମ୍ପାଦିଲେ କର୍ତ୍ତବ୍ୟାନୁରୋଧେ,
(୩) ବିକାଶିଲା ଅବରୋଧେ ଆଲୋକ-ଲହରୀ ।
ବହିରଙ୍ଗ-ଅନ୍ତରଙ୍ଗ-ଶୁଦ୍ଧ ଦ୍ୱିଜକୁଳ
ବିଧୁନିତ କଲେ ପୂତ ଉପାସନାଗାର,
ବେଦମନ୍ତ୍ର-ଈଶସ୍ତବ-ଓଁକାର-ଝଙ୍କାରେ ।
ବ୍ରହ୍ମର୍ଷିବର ବଶିଷ୍ଠ ସଶିଷ୍ୟ କର୍ତ୍ତୃକ
ବିଧୂମିତ ହୋମଧୂମେ ପବିତ୍ର ଆଶ୍ରମ ।
(୪) ବୃତବର୍ତ୍ତୀ-ଦୀପ କିନ୍ତୁ ଜଳୁନାହିଁ କାହିଁ
(୫) ବୈଭବିକ-ସୌଧେ କିମ୍ବା ଦରିଦ୍ର-କୁଟୀରେ ।
ବାଳା ବଧୂ ବୃଦ୍ଧା ଆଦି ସଭିଙ୍କର ଚିତ୍ତ-
ବିମ୍ବିତ ହୋଇଛି, ଯେଣୁ ପବିତ୍ରତାଦର୍ଶେ
ବିଶ୍ୱଧନ୍ୟା ସମ୍ରାଜ୍ଞୀ-ବଇଦେହୀଙ୍କର ।
ବୋଲେ କେଉଁ ଅଶ୍ରୁ-ନେତ୍ରା ଦେଖ ତ ସଜନି,
(୬) ବାଜ ପରି ଆଜ ଯୁବରାଜଙ୍କ ବନ୍ଧନେ

(୧) ବିହାୟସ—ଆକାଶ । (୨) ବର୍ତ୍ତୀକ୍ରିୟା—ସାନ୍ଧ୍ୟଦୀପ ଲଗାଇବା କାର୍ଯ୍ୟ ।
(୩) ଅବରୋଧ—ଅନ୍ତଃପୁର । (୪) ବୃତବର୍ତ୍ତୀ—ଲଣ୍ଠନ । (୫) ବୈଭବିକ—ଧନୀ ।
(୬) ବାଜ—ସଞ୍ଚାଣ ପକ୍ଷୀ ।

ବାସ ଘଡ଼ଉଡ଼ି ଦେଉଛି ମାନସ-ବିହଙ୍ଗେ;
ବଞ୍ଚିବେ କହିଁ ଜନନୀ କଉଶଲ୍ୟା ରାଣୀ ?
ବୃଦ୍ଧାଟିଏ କୁବ୍ଜା ହୋଇ ଉତ୍ତରିଲ୍ଲ, ମୋତେ
ବିଧାତା ଶ୍ରୀରାମମାତା କରିଥାନ୍ତା ଯେବେ,
ବିସର୍ଜିଥାନ୍ତି ପଟ୍ଟେ ମୁଁ ପାଟରାଣୀ ପଦ,
ବାହୁଡ଼ାଇ ଆଣିଥାନ୍ତି ଶ୍ରୀରାମଙ୍କୁ; ମୋର
ବଧୂ ପୁତ୍ର ଦେଖି ନେତ୍ର ହେଉଥାନ୍ତା ପ୍ରୀତ ।
ବିବେକ ବିସ୍ତାରି କେହୁ ବୋଲଇ—ନରେଶ
ବୁଦ୍ଧିଜ୍ଞାନ ହରାଇଲେ ପଡ଼ି ନାରୀମୋହେ;
ବର୍ଷାକାଳେ ମାଚହୁଦା-ନଦୀ ସ୍ରୋତେ ପଡ଼ି
ବୃଷ୍ଟିଜଳ ନିର୍ମଳତା ହରାଏ ଯେସନ ।
ବସନପ୍ରାନ୍ତେ ଲୋତକ ପୋଛି କହେ କେହୁ—
ବିଧାତା, ଧର୍ମଦେବତା ସତେ ଅଛି ହେଲେ
ବନବାସୀ-ରାମ-କ୍ଳେଶ-ଉତ୍ତପ୍ତ-ନିଃଶ୍ୱାସେ
ବିଦଗ୍‌ଧା ହେଉ କୈକେୟୀ-କୁଟିଳହୃଦୟା ।
ବାଳବୃଦ୍ଧବନିତାଦି ଏହିପରି ସର୍ବେ
ବିଷାଦିତ, ବସି ଦାଣ୍ଡ ଅଳନ୍ଦ ଚତ୍ୱରେ,
(ବିପ୍ରବତ୍ସଳ ଶ୍ରୀରାମ, ପତିପ୍ରାଣା ସୀତା,
ବୈମାତ୍ରେୟ-ଭ୍ରାତୃଭକ୍ତ ସୌମିତ୍ରି-ପ୍ରବୀର,
ବାତ୍ସଲ୍ୟପ୍ଲାବିତ-ପ୍ରାଣ ସତ୍ୟସନ୍ଧ ନୃପ,
(୧) ବ୍ୟାଳୀ କପଟକୁଶଳା-ରାଣୀ କୈକେୟୀର
ବ୍ୟକ୍ତ ଚରିତ-ଚର୍ଚ୍ଚାରେ ନିବେଶି ମାନସ)
ବୁଭୁକ୍ଷା ପିପାସା ପ୍ରାଣୁ କରୁଛନ୍ତି ଦୂର ।

ବିଷାଦର ପୁରୀ ଆଜ ସାକେତ ନଗରୀ
ବାଲ୍ମୀକି-କଳ୍ପନାଶ୍ରିତ, ପାରିବ କି ବର୍ଣ୍ଣି
ବାଳମତି-ପଣ୍ଡିତମ୍ମନ୍ୟ-ନଗଣ୍ୟ ଲେଖକ ?
ବାତ୍ୟା-ଉତ୍ପାଟିତ ଜୀର୍ଣ୍ଣ-ପାଦପ ସଦୃଶ

(୧) ବ୍ୟାଳୀ—କ୍ରୂର ।

ବ୍ୟାକୁଳତା ଶୋକ ଚିନ୍ତା ହୃଦୟେ ପୂରାଇ,
ବିଚ୍ୟୁତ-ରତ୍ନମୁକୁଟ ସଜ୍ଜା-ବିରହିତ
ବ୍ୟସ୍ତବାସ ଅଶ୍ରୁ-ସିକ୍ତ-ନମ୍ର-ବଦନ
ବାସ୍ତନ୍ୟପ୍ରାଣ ନୃପତି ପଡ଼ିଛନ୍ତି ଭୂମେ ।
ବିକ୍ଷିପ୍ତ ଚିନ୍ତାସଂପୃକ୍ତ ସାଶଙ୍କ-ଚିତ୍ତରେ
ବେଷ୍ଟିତ କୋସଳରଗଣ ନୃପତିଙ୍କ ପାର୍ଶ୍ୱେ;
ବ୍ୟଜନହସ୍ତରେ କେ ବା ଦଣ୍ଡାୟିତ, କେହୁ
ବାରି ସିଞ୍ଚୁଅଛି ନୃପ ଅଶ୍ରୁସିକ୍ତ-ମୁଖେ ।
ବୋଲୁଛି କେ, ଧୈର୍ଯ୍ୟ ଧର, ଧୈର୍ଯ୍ୟ ଧର ଦେବ !
ବହୁ ସଜ୍ଜା ବହୁକ୍ଷଣେ ମୂର୍ଚ୍ଛିତ ନରେଶ
ବିନତ ମସ୍ତକେ ହସ୍ତ ନବେଶି ଲଲାଟେ,
ବିସର୍ଜି ଦୀର୍ଘ ନିଃଶ୍ୱାସ ଶୋକରୁଦ୍ଧ କଣ୍ଠେ
ବୋଲନ୍ତି, ହା ରାମ ମୋର ଜୀବର ଜୀବନ,
ବିଭ୍ରମାତ୍ମକ ଧାରଣା 'ମୋର' ବୋଲିବାର;
ବତ୍ସ, ନୋହୁ ଏ ମାନବ ଦଶରଥ ସୁତ;
ବିଭୁ ବରେଣ୍ୟ ସନ୍ତାନ ମୁକ୍ତାତ୍ମା ତୁ ପିତା
ବିଶ୍ୱହିତେ ଅବତୀର୍ଣ୍ଣ ବିଶ୍ୱମ୍ଭର କୋଳେ ।
ବିଶୁଦ୍ଧ ଅମରାକ୍ଷରେ ଯେଉଁ ଯଶୋଗୀତି
ବିରଚି ଗଲୁ ଭାରତ-ସ୍ମୃତିପଟେ ଆଜ,
ବହୁକାଳ ଭାରତୀୟ-ହୃଦୟରଞ୍ଜନ
(୧) ବିଘାତ ସ୍ମରଣ୍ୟ ହେବ ପୂତ ନାମ ତୋର ।
ବିଶ୍ୱଧନ୍ୟ କ୍ଷଣଜନ୍ମା ଲକ୍ଷ୍ମଣ ତୁ ଧନ୍ୟ,
ବିଶିଷ୍ଟ ତିତିକ୍ଷା ଗୁଣ ସମର୍ପିଲୁ ଯାହା
ବିବସ୍ୱାନ୍-ବଂଶାବତଂସ ଶ୍ରୀରାମ-ଶ୍ରୀପଦେ
ବିଭବ-ନିଃସ୍ପୃହ-ମାନସେ ବାନ୍ଧି ଜୀବନ-ଡୋରେ !
(୨) ବାରି ସ୍ୱାତୀ ନକ୍ଷତ୍ରରେ ଶାମୁକା-ଗର୍ଭରେ
ବ୍ୟବସ୍ଥାନ କଲେ ହୁଏ ମୌକ୍ତିକ-ରତନ;
(୩) ବନଜ-ପତ୍ରେ ପଡ଼ିଲେ ମୁକୁତା ସଦୃଶ,

(୧) ବିଘାତ—ପ୍ରଭାତ କାଳ । (୨) ବାରି—ଜଳ । (୩) ବନଜ—

(୧) ବୀତିହୋତ୍ର-ଗର୍ଭେ ଦିଏ ଅସ୍ତିତ୍ୱ ହରାଇ;
ବୈଲକ୍ଷଣ ଘଟେ ଯଥା ଭାଗ୍ୟ ଅନୁଯାୟୀ
(୨) ବିଶିଷ୍ଟ-ଶିଷ୍ଟ-ଅଶିଷ୍ଟ ସଂସର୍ଗତା ଫଳେ ।
ବିଅର୍ଥେ କି ରାମ ସଙ୍ଗେ ଜାନକୀ, ଲକ୍ଷ୍ମଣ
ବିପିନରେ ପଶିଥାନ୍ତେ ତେଜି ସୁଖସ୍ୱାର୍ଥ ?
ବିନା ପାପଫଳେ ମୂଢ଼ ଦଶରଥ କେହ୍ନେ
ବାର୍ଦ୍ଧକ୍ୟ ଜୀବନେ ସୁଦ୍ଧା ଦୁର୍ବିଷହାବଦ୍ଧ ।
ବିଧ୍ୱନିତ ‘ପାପ’ ଶବ୍ଦ ଯେନ ନୃପଙ୍କର
ବାଜେ ରମ୍ଭାପତ୍ର ପ୍ରାୟ ବିକମ୍ପିଲା ପ୍ରାଣ ।
(ବିପଦ-ବ୍ୟାଧି-ସନ୍ତାପେ ସ୍ୱକୀୟ ଦୁଷ୍କୃତି
ବିବେକୀର ସ୍ମୃତିପଟେ ପଡ଼ିଥାଏ ଫୁଟି ।)
ବାହିଣି ଅତୀତ-ସ୍ମୃତି-ସ୍ୟନ୍ଦନ ମାନସ
ବସିଲା, ତମସାତୀରେ ତେଜି ନୃପହୃଦ ।
(୩) (ବିଲୋକିଲି—ତମସ୍ୱିନୀ ଘୋଟିଅଛି ତହିଁ,
ବାହିନୀ ତମସା ଘାଟେ ପଡ଼ିଅଛି ଏକ
ବାଳକ ତାପସ; ତାର କୋମଳ ବକ୍ଷରେ
ବିଦ୍ଧ ଗାଢ଼େ ପ୍ରଜ୍ୱଳିତ ତୀକ୍ଷ୍ଣ କାଣ୍ଡମୁନି ।
ବାଣାହତ ଋଷିପୁତ୍ର-ହୃଦରୁ ନିଃସୃତ—
ବିଳାପ-ସ୍ରୋତ ଦେଉଛି କାନନ ଭସାଇ ।
(୪) ବର୍ଷ୍ମୀ ହୃଦ ସ୍ଥିର କିସ ? ଶୁଣି ସେ କାରୁଣ୍ୟ
ବଜ୍ରହିଁ ତରଳିଯିବ, ହାୟ, ହାୟ, ହାୟ !
ବିସ୍ମିତ ଲୋତକନେତ୍ରେ ଚତୁର୍ଦ୍ଦିଗ ଚାହିଁ
ବୋବାଇଲା ମୁନିପୁତ୍ର କରୁଣ କଣ୍ଠରେ—
ବିଧାତ ! ମୋ ଜନକଙ୍କୁ ଯା ଅଛି ସ୍ମରଣେ
(୫) ବିବୁଧ ନର କିନ୍ନର କିବା ଖଗ ମୃଗ
ବୃକ୍ଷଲତା ଆଦି କୀଟପତଙ୍ଗ ଜୀବନେ,
ଦିଅନାହିଁ ପୀଡ଼ା କେବେ କ୍ରୀଡ଼ାଛଳେ ସୁଦ୍ଧା;

(୧) ବୀତିହୋତ୍ର—ଅଗ୍ନି । (୨) ବିଶିଷ୍ଟ—ଉତ୍ତମ । ଶିଷ୍ଟ—ମଧ୍ୟମ । ଅଶିଷ୍ଟ—ଅଧମ ।
(୩) ତମସ୍ୱିନୀ—ଅନ୍ଧାରରାତି । ବାହିନୀ—ନଦୀ । (୪) ବର୍ଷ୍ମୀ—ଶରୀରଧାରୀ ।
(୫) ବିବୁଧ—ଦେବତା ।

ବୋଲିବି କେମନ୍ତେ ଏହା କୃତକର୍ମ ଫଳ !
(୧) ବ୍ୟାଧ ପରଶ୍ରୀକାତର ହୃଦେ ଈର୍ଷାନଳ
ଜଳନ୍ତା ବା, ସେଭଳି ମୋ ସୁଖଶିଖା କାହିଁ ?
ବନ୍ୟ ଫଳମୂଳ ଖାଦ୍ୟ, ପାନୀୟ ଝର୍ଣ୍ଣମ୍ବୁ,
ବିଭୂତି ରୁଦ୍ରାକ୍ଷମାଳ ଅଙ୍ଗର ଭୂଷଣ,
ବୃକ୍ଷର ବଲ୍‌କଳ ହୋଇଅଛି ପରିଧେୟ;
ବୃଦ୍ଧ ପିତାମାତା—ଅନ୍ଧ ଅନ୍ଧୁଣୀ-ଶୁଶ୍ରୂଷା-
(୨) ଜୀବବରେ ପୂର୍ଣ୍ଣ ସିନା ପର୍ଣ୍ଣାବାସ ମୋର ।
ବୋଧ ହେଲା କି ଅସହ୍ୟ କାହା ପକ୍ଷେ ଏହା ?
ବିଧି-ଉଦ୍ଭାବିତ-ନବ୍ୟ ମନୁଷ୍ୟ କି ସେହୁ ?
ବୁଝିଛି କି ନିତ୍ୟ ରହି ଏ ଅନିତ୍ୟ ଧାମେ,
ଜୀବହରିବ ଚିରସ୍ଥାୟୀ ସୌଭାଗ୍ୟ ମଦରେ ?
ବିଚିତ୍ର ଉପାଦାନରେ ଗଢ଼ି ତା ହୃଦୟ
ବଢ଼ିଗଲେ କି ବିଧି ଅଦ୍ଭୁତ ଉଦ୍ଦେଶ୍ୟେ ?
ବିଧି-ଇଚ୍ଛାରେ ଅବଧି ନୁହେଁ—ଏହା ଯେବେ
ବ୍ୟର୍ଥ, ମୋଭଳି ପାତକୀ କାନ୍ଦିଲେ କି ହେବ ?
ବ୍ରହ୍ମାଣ୍ଡେ ଜନ୍ମ ଲଭିଲେ ମରଣ ନିଶ୍ଚୟ,
ବାଧୁନାହିଁ ସେଥିପାଇଁ ମରିଯିବ ବୋଲି;
ବୃଦ୍ଧ ଜନକ ଜନନୀ ମୋ ଅନ୍ଧ ଅନ୍ଧୁଣୀ,
ବାତ୍ସଲ୍ୟ-ଧନେ ଯାହାଙ୍କ ଋଣୀ ଏ ଜୀବନ,
ବାହାରିଯିବ ତାହାଙ୍କ ଅଜ୍ଞାତରେ ଯାହା
ବ୍ୟାକୁଳ ହେଉଛି ସିନା ସେ ଦୁଃଖ ସୁମରି ।
ଜୀର୍ଣ୍ଣଜୀବନ-ଶୋଷକ ଏକେ ତ ଏ ଗ୍ରୀଷ୍ମ-
ବର୍ଦ୍ଧିତ ତୃଷ୍ଣାରେ ତାଙ୍କ କଣ୍ଠ ଯିବ ଶୁଖି;
ବେଳୁଁ ବେଳ ବିଳମ୍ବିତା ଅନୁଭବି ମୋର
ବାରମ୍ବାର ଡାକି ଶେଷେ ହାରିବେ ଜୀବନ ।
ବଞ୍ଚାଇବ କିଏ ତାଙ୍କୁ ଏ ଅଧମ ବିନା ?
ବୁଲୁଥିଲେ କେଉଁଣେ ଫଳମୂଳ ଆହରଣେ,
ଜିଳମ୍ବିତା ଜାଣି ମୋର, ଅନ୍ଧୁଣୀ ଜନନୀ !

(୧) ବ୍ୟାଧ—ଦୁଷ୍ଟ । (୨) ପର୍ଣ୍ଣାବାସ—ପତ୍ରକୁଡ଼ିଆ ।

ବିପିନରେ ପଶି କରି ଅଣ୍ଡାଳି ଅଣ୍ଡାଳି
ବୋବାଉ—କେଣିକି ଗଲୁ, ଆସ ଧନମଣି !
ବିସୋରି ଦେବୁ ଜନନି, ଆଜଠାରୁ ମୋତେ,
'ବତ୍ସମଣି ଆସ' ବୋଲି ନ ଡାକିବୁ ଆଉ ।
ବାହୁଡ଼ିବି ନାହିଁ, ଡାକ—ମରିଗଲେ ସୁଦ୍ଧା;
'ବାପଧନ' ସମ୍ବୋଧନ ଶେଷ ଆଜି ତୋର ।
ବାତ୍ସଲ୍ୟ-ଋଣ ତୋର ମା' ଗୋଟିଏ ଦିନର
ବିଂଶତି କୋଟି ଜନ୍ମେ ମୁଁ ନପାରିବି ଶୁଝି ।
ବିକପାଇ ପ୍ରାଣକୁ ମୋ ମାନସ-ପଟରେ
(୧) ବିଷ୍ଟପ ହେଉଛି ତାହା ସ୍ୱତଃ ହୃଦସ୍ଫୁରୁ ।
ବୟସ ମୋ ଗଣ୍ୟ ଥିଲି ଦଶ ସମ୍ବତ୍ସରେ
ବହୁଥିଲି ଶୀତକାଳ-ଶେଷ ସେ ସମୟ,
ବିଭାବରୀ-ମଧ୍ୟଭାଗେ ହିମ ବର୍ଷା ଶୀତ—
(୨) ବିଧୂନନେ, ସଂହନନ ଥରୁଥିଲି ତୋର ।
(୩) ବିଗ୍ରହ ମୋ ଅଣ୍ଡାଳଣ ଜାଣିଲୁ ସେକାଳେ
ବଳ୍କଳ-ଓଢ଼ଣୀ ନାହିଁ, ପଡ଼ିଅଛି ଖସି ।
ବତ୍ସଲେ, ତୋ ସ୍ନେହାମୃତ ଅମୂଲ୍ୟ ଅତୁଲ୍ୟ
ବଳ୍‌କଳ-ଓଢ଼ଣୀ ଆଣି ତୋ ଦେ'ଢ଼ଣୀ ସହ
(୪) ବ୍ରଧ୍ନେ ମୋର ଘୋଡ଼ାଇଲୁ ଶୁଆଇ କୋଳରେ;
ବିସ୍ପର୍ଶେ ବେକୁଁ ତୋ କର ଭାଙ୍ଗିଥିଲି ନିଦ
ବାକ୍‌କୁଣ୍ଠାରେ ଥିଲି ସିନା ସ୍ନେହ ପରୀକ୍ଷାର୍ଥେ ।
ବାପାଙ୍କ ପୁତ୍ରବାତ୍ସଲ୍ୟ ସେପରି ଜନନି,
ବିସ୍ମରଣ କରି ପ୍ରାଣ କାନ୍ଦୁଛି ଯେତିକି
ବଢ଼ୁଛି ତହୁଁ ଦ୍ୱିଗୁଣ ବିଦ୍ଧ ଶର-ଜ୍ୱାଳା ।
ବହି ଧୈର୍ଯ୍ୟ କ୍ଷଣେ ନେତ୍ରନୀର ପୋଛି ପୋଛି
ବ୍ୟାକୁଳ-ବିନୟେ ପୁଣି କହିଲି ଏସନ—
ବାରେ ଆସ ଅନ୍ଧ କାହିଁ ଧାନୁକ ମହାତ୍ମା !
ବକ୍ଷସ୍ଥଳୁଁ ବିଦ୍ଧ ଶର କାଢ଼ିନେଇ, ମୋତେ

(୧) ବିଷ୍ଟପ—ବ୍ୟକ୍ତ । (୨) ବିଧୂନନ—କମ୍ପନ । (୩) ସଂହନନ—ଶରୀର ।
(୪) ବ୍ରଧ୍ନ—ଶରୀର ।

ବିଦାୟ ଦିଅନ୍ତୁ ଇହ ସଂସାରୁ ଚଳିଲେ
ବାହୁଡ଼ିବି ପରଧାମେ, ମାଗୁଣି ଏତିକି ।
(୧) ବୀରୁଦନ୍ତରୁଁ ଏକ ଧନୁଷ୍ପାଣି ନର
ବିକ୍ଷତ-କମ୍ପିତ-ପଦେ ବାହାରି ସଧୀରେ,
ବାଳବ୍ରହ୍ମର୍ଷି ସମ୍ମୁଖେ ହୋଇ ଉପସ୍ଥିତ
ବଦ୍ଧାଞ୍ଜଳି-ଭଙ୍ଗସ୍ୱରେ କଲା ନିବେଦନ—
ବିବେକବିହୀନ ମୂର୍ଖ ଅଯୋଧ୍ୟା ନରେଶ
ବାଣାଘାତେ ମୋର ଦେବ, ଆହତ ଆପଣ ।
ବିଶ୍ୱ-ନାରକୀୟ ସୀମା କରିଛି ଲଙ୍ଘନ,
ବ୍ରହ୍ମହତ୍ୟା ମହାପାପେ ଆଜ ଏ ମୋହର
(୨) ବୃଜନର ଫଳ, କେତେ କଳପ ପର୍ଯ୍ୟନ୍ତ
ବଞ୍ଚିତ କରିବ ମୋତେ ମାନବ ଜନ୍ମରୁ,
ବିଶ୍ୱପତି ନ୍ୟାୟନିଷ୍ଠ ଧାତାଙ୍କୁ ତା ଜଣା !
ବର୍ତ୍ତମାନ ମୋ ଦୁଷ୍କୃତ-ସମୁଚିତ ଦଣ୍ଡ
ବ୍ୟବହାର କରନ୍ତୁ ସ୍ୱଇଚ୍ଛାନୁରୂପ;
* ବିଗତ ବଂଶାଭିଶାପ ଅବା ଭସ୍ମୀଭୂତ ।
(୩) ବ୍ରୀଡ଼ିତ ବଦନେ ହସି ଉତ୍ତରିଲେ ସିନ୍ଧୁ—
ବୀରେନ୍ଦ୍ର, ସେ କାର୍ଯ୍ୟ ନର-ଶକ୍ତି ବାଧାତୀତ;
ବିଭୁଙ୍କର ବିଶ୍ୱରାଜ୍ୟେ ଆତ୍ମ-ଆଧିପତ୍ୟ
ବିକାଶ କରିବ ଅହୋ, କେଉଁ ସାହସରେ !
ବିଧିମତ ଦଣ୍ଡ ତୁମ୍ଭ ନିର୍ଣ୍ଣୟ କରଣେ
ବଢ଼ାଇବ ଆତ୍ମଦୋଷ ପ୍ରଭୁଙ୍କ ସମ୍ମୁଖେ !
ବୁଦ୍ଧି ବିବେକକୁ ମୋର ଧିକ ଶତଧିକ ।
ବାସନା ଏତିକି ମାତ୍ର, ଅନ୍ତିମ ଜୀବନେ
ବିଶ୍ୱାସ ମୋ ସେତିକରେ ହୋଇଥିବ ଧନ୍ୟ ।

---

(୧) ବୀରୁତ୍—ବହୁଶାଖାଯୁକ୍ତ ଲତା । (୨) ବୃଜନ—ପାପ । (୩) ବ୍ରୀଡ଼ିତ—ଲଜ୍ଜିତ ।

* କପିଳ ମହର୍ଷିଙ୍କ ଅଭିଶାପରେ ଦଶରଥଙ୍କର ପୂର୍ବପୁରୁଷଗଣ ଶଙ୍କଟର ଅର୍ଦ୍ଧଦଗ୍ଧ ଯାତନା ଅନୁଭବ କରୁଥିଲେ ।

(୧) ବିକ୍ରାନ୍ତ, ଏ ବିଷ ମୁଖ-ବିଷମ ନାସ୍ତିଚ
ବିଷରୁ ମୋ କାଢ଼ିନେଇ ନିଃଶଙ୍କଚିତ୍ତରେ
(୨) ବନପୂର୍ଣ୍ଣ କୁମ୍ଭ ଧରି ଚଳ ଅବିଳମ୍ବେ
(୩) ବର୍ତ୍ମ ନିକଟ କୁଟୀରେ; ମୋ ତାତ ଜନନୀ
ବସିଥିବେ, ଶୁଷ୍କକଣ୍ଠେ ପିପାସା-ବ୍ୟାକୁଳେ;
ବାରିପାନ ଶେଷେ, ତାଙ୍କୁ ଜଣାଇବ ମୋର
ବିନୀତ ଭକ୍ତି ପ୍ରଣାମ ତାଙ୍କ ଶ୍ରୀଚରଣେ,
ବିଘଟିତ ଆବର ଏ ଦୁଷ୍କୃତ ଘଟଣା ।
ବଟୁବାକ୍ୟେ କିଂକର୍ତ୍ତବ୍ୟବିମୂଢ଼ ରାଜନ
(୪) ବରାଙ୍ଗେ ପଡ଼ିଲା କିବା ଅକାଳ ଚଣ୍ଡିକ ।
ବଳି ନ ବଳଇ ମନ କାଣ୍ଡ କାଢ଼ିବାକୁ;
ବପୁ ସ୍ୱେଦ ଜର୍ଜରିତ, ବିସ୍ଖଳ ଚରଣ;
(୫) ବର୍ଦ୍ଧକୀ-ନିର୍ମିତ ନର ପରି ଏ ନରେଶ
ବାକ୍‌ରୁଦ୍ଧ; ସ୍ତମ୍ଭିତ ହୋଇ ରହିଗଲେ କ୍ଷଣେ ।
ବିପାକେ ଯା ଥିବ ତାହା ଘଟଇ ନିଶ୍ଚୟ;
ବର୍ଜନୀୟ ତହିଁ ପାଇଁ ସନ୍ତାପ ଶୋଚନା ।
ବିଶ୍ବରି ଏସନ ରୀଏ ଧୈର୍ଯ୍ୟ ଆଣି ହୃଦେ
ବିଶିଖ ଉପାଡ଼ି ନେଲେ ସିନ୍ଧୁ ବକ୍ଷସ୍ଥଳୁଁ ।
ବ୍ରହ୍ମସ୍ତୋତ୍ର ଶୁଦ୍ଧକଣ୍ଠେ—ଅର୍ଦ୍ଧସ୍ଫୁଟ ସ୍ୱରେ
ବାରମ୍ବାର ଉଚ୍ଚାରିଲା ମୁମୂର୍ଷୁ ତାପସ;
(୬) ବେର ତନ୍ତ୍ରଗଲା ରକ୍ତ-ଅବାର୍ଯ୍ୟ-ନିର୍ଗମେ,
ବିଷୟାବାସ ବିସର୍ଜି ଭୌତିକ ସଂସାରୁ
ବିଦାୟ ହେବୁ ଜୀବାତ୍ମା ହେଲା ବ୍ୟାକୁଳିତ;
ବିବର୍ଣ୍ଣ ବଦନେ ଶିର-ମୁଦ୍ରିତ ନୟନେ
ବିଶ୍ରାମିଲା ପିଣ୍ଡ, କାଳ କରାଳ ଗର୍ଭରେ ।
ବଲ୍କଲବାସ ଘୋଡ଼ାଇ ମୃତ୍ପିଣ୍ଡ ଉପରେ
ବଟୁ ନିର୍ଦ୍ଦେଶିତ ପଥେ କୁଟୀରଭିମୁଖେ
ବିହ୍ୱଳେ ପ୍ରଗତି ନୃପ ଶାପାଶଙ୍କଚିତ୍ତେ ।

(୧) ବିକ୍ରାନ୍ତ—ପରାକ୍ରମଶାଳୀ । (୨) ବନ—ଜଳ । (୩) ବର୍ତ୍ମ—ପଥ । (୪) ବରାଙ୍ଗ—ମସ୍ତକ । (୫) ବର୍ଦ୍ଧକୀ—ବଢ଼ାଇ । (୬) ବେର—ଶରୀର ।

(୧) କୃତାବାସ-ପାର୍ଶ୍ୱବର୍ତ୍ତୀ ହେଲେ ଯହୁଁ ନୃପ,
ବାଜି ଚରଣ-ଶବଦ ଅନ୍ଧ ତପିବର
ବତ୍ସଲତାମୃତସିକ୍ତ-ସୁମଧୁର ସ୍ୱରେ
ବୋଇଲେ, ଚଞ୍ଚଳ ପଦେ ଆସ ବତ୍ସମଣି !
ବହୁଦୂର ନୁହଇ ତ’ ତମସା, ଏତେକ
ବିଳମ୍ବ ଘଟିଲା କେହ୍ନେ ? କି ଅବା ପଥରେ
ବ୍ୟାଘ୍ରାଦି ହିଂସ୍ରକ ପ୍ରାଣୀ ଥିଲେ ଅଟକାଇ ?
ବଞ୍ଚି ଆସିଲୁ କେମନ୍ତେ ? ତୃଷାରେ ଆମ୍ଭର
ବାହାରି ଗଲେହେଁ ପ୍ରାଣ, ଆଜିଠାରୁ ଆଉ
(୨) ବନ ଆଣିବାକୁ ଘଟେ ନ ଯିବୁ ରେ ଧନ !
ବିକଳ କୋମଳ କଣ୍ଠେ କହଇ ଅନ୍ଧୁଣୀ—
ବୁଝିଲିଣି ଧନମଣି, ତୋ ମନର କଥା;
ବ୍ୟଥା ଘଟିଛୁ ମରମେ କେଜାଣି କି ହେତୁ
(୩) ବିତଥ୍ୟ ନୁହଇ ଯେଣୁ ରହୁଛୁ ମଉନେ ।
ବୋଲ ତ’ ମୋ ମଥା ଛୁଇଁ, ତାହା କିହେ ବୋଲ;
(୪) ବାରିପ୍ରବାହରୁ ବାରି ପ୍ରବାହ ପରିଏ
ବଚନୁ ଝରିପଡ଼ୁଛି ପୁତ୍ର ବତ୍ସଳତା;
ବହୁଛି ବା ଦ୍ରବ ଅଗ୍ନି ଦହନ୍ତ ପରାଣ ।
ବିଷମସ୍ମ-ବିଷାଦରେ ନୃପହୃଦ ପୂର୍ଣ୍ଣ;
ବଳେ ଇଚ୍ଛା, ନିଜ ମୁଣ୍ଡ ଛିଣ୍ଡାଇବି ଖଡ୍‌ଗେ;
ବିବେଚିତ ହେଲା ପୁଣି ପର ମୁହୂର୍ତ୍ତରେ—
ବ୍ରହ୍ମହତ୍ୟା-ଆତ୍ମହତ୍ୟା ଅଶେଷ ପାତକ
ବଢ଼ିଗଲେ, କୋଟି ଜନ୍ମେ ନ ପାରିବି ପାରି ।
ବାକ୍‌କୁଣ୍ଠାରେ ଯାହା ହେଉ ପରିତ୍ରାଣ କାହିଁ ?
ବିଜ୍ଞପିଲେ ନରମଣି ସ୍ୱକୃତ ଦୁଷ୍କୃତ
ବିଘଟିତ ସିନ୍ଧୁହତ୍ୟା—ଆତ୍ମ-ଅଜ୍ଞାନତା;
(୫) ବିସଂଶ୍ଳିଷ୍ଟ-ତରୁବଲ୍ଲୀ ପ୍ରଭଞ୍ଜନେ ଯଥା,

(୧) କୃତାବାସ—ମଠ, ମନ୍ଦିର ।(୨) ବନ—ଜଳ । (୩) ବିତଥ୍ୟ—ମିଥ୍ୟା ।
(୪) ବାରିପ୍ରବାହ—ଝରଣା । (୫) ବିସଂଶ୍ଳିଷ୍ଟ—ସଂଯୁକ୍ତ ।

(୧) ବିସମ୍ବାଦ ଶ୍ରବଣରେ ସେ ଅନ୍ଧ ଅନ୍ଧୁଣୀ
ବୁଦ୍ଧି ଜ୍ଞାନ ଚଇତନ୍ୟ ହରାଇ ହୃଦରୁ
ବସୁନ୍ଧରା-ବକ୍ଷେ ଢ଼ଳି ପଡ଼ିଲେ ସହସା ।
(୨) ବସୁକୁମ୍ଭ ଧରି ନୃପ ଧାଇଁ ଆଶୁପଦେ
ବିମୂର୍ଚ୍ଛିତ-ବ୍ୟାକୁଳିତ-ଅନ୍ଧଦମ୍ପତିର
ବଦନମଣ୍ଡଳେ ଜଳ ଅଳ୍ପ ଅଳ୍ପ ଢ଼ାଳି
ବାସ-ବ୍ୟଜନ ସଧୀର କଲେ ସଞ୍ଚାଳନ ।
ବହୁକ୍ଷଣ ପରେ ସଂଜ୍ଞା, ଲଭି ଜ୍ଞାନ "ହା' ହା'
ବତ୍ସ ସିନ୍ଧୁ" ବାକ୍ୟେ ତୋଳି ବସାଇଲା ଅନ୍ଧେ;
ବିହ୍ୱଳିତ-ଶୋକକଣ୍ଠେ ଭାଷିଲେ ଅନ୍ଧର୍ଷି—
(୩) 'ବାରତା' ବାର-ତାରକା-ବାର କି ହେ ନୃପ !
ବିହିଲା ବିହ୍ନି ଆଜୁଁ ମୋ ଜୀବନ-ସଂସାରେ ?
ବଞ୍ଚି ନାହିଁ କି ମୋ 'ସିନ୍ଧୁ' ସତେ ଧରାଧାମେ ?
ବଞ୍ଚିତ ହେଲି କି ଆଜୁଁ ସିନ୍ଧୁ ସମ୍ବୋଧନେ ?
ବିହିତ ପ୍ରାପ୍ୟ-ସମ୍ବାଦ ଏହି କି ମୋହର ?
ବିଶ୍ୱରୁଥାଏ କେବଳ ସିନ୍ଧୁଲାଗି ସଦା
(୪) ବିନେତ୍ର ନୁହେ, ସୁନେତ୍ର ଦେଇଛନ୍ତି ବିଧି ।
(୫) ବ୍ରାତ୍ତ୍ୟ ନୁହେ, ଭୋଗୁଅଛୁ ସ୍ୱରଗ ସମ୍ପତ୍ତି;
(୬) ବର୍ହକୁଟୀ ନୁହେ, ଏ ମୋ ସୁରମ୍ୟ ହରମ୍ୟ ।
ବିଧ୍ୱସ୍ତ ହେଲା କି ଆମ୍ଭ-ପ୍ରସାଦ-ପ୍ରାସାଦ ?
ବିଳପିଲା ଅନ୍ଧ ଶୋକେ ସଚେତ ଅନ୍ଧୁଣୀ
ବିଷ ମସ୍ତକରେ କର କଚଡ଼ି କଚଡ଼ି ।
ବାଲା ମୋର, ଗେହ୍ଲା ମୋର, ଜୀବର ଜୀବନ !
ବାପଧନ, ଭାଙ୍ଗିଦେଲୁ ମୋ ଆଶା ଭରସା;
(୭) ବାୟସ-ବନ୍ଧ୍ୟାର ଏକମାତ୍ର ନେତ୍ରତାରା !
(୮) ବହ୍ନି ପ୍ରାୟେ ଗର୍ଭ ଜଳୁଅଛୁ ପାପିନୀର

(୧) ବିସମ୍ବାଦ—ମନ୍ଦ ଖବର । (୨) ବସୁ—ଜଳ । (୩) ବାରତାରକାବାର—ପ୍ରଳୟ । (୪) ବିନେତ୍ର—ଚକ୍ଷୁହୀନ । (୫) ବ୍ରାତ୍ତ୍ୟ—ତପସ୍ୱୀ । (୬) ବର୍ହ—ପତ୍ର । (୭) ବାୟସବନ୍ଧ୍ୟା—କାକବନ୍ଧ୍ୟା ଅର୍ଥାତ୍‌ ଏକମାତ୍ର ସନ୍ତାନ ପ୍ରସବକାରୀ ସ୍ତ୍ରୀ । (୮) ବହ୍ନି—ଅଗ୍ନି ।

ବୋଲନ୍ଦଅ ସୁଧା ତହିଁ ମାଆ ମାଆ ବୋଲ ।
ବାରେ ବାରେ ମୁଁ ପାପିନୀ ସ୍ୱଭାବଦୋଷରେ
ବର୍ଷଣ କଲେ କଟୂକ୍ତି, ତୋ କୋମଳ ପ୍ରାଣେ,
ବହସିତ ବନୁ ମୁଖେ ନ ଆସେ କାନ୍ଦଣା ।
ବହ୍ନିଥିଲୁ ବେଷ କ ମୋ ଅଗାତ ଦୋଷରେ
ବମର୍ଷ-ସିନ୍ଧୁରେ ତେଣୁ ଠେଲଦେଇ ମୋତେ
ବମୁକ୍ତ ହେଲୁ କ ସିନ୍ଧୁ ! ଏ ମାୟା ସଂସାରୁ ?
ବଳା ରେ, ତୋ ବନା କେହ୍ନେ ରଖିବ ଜୀବନ ?
(୧) ବନଲକ୍ଷ୍ମୀ ବଞ୍ଚିବକ ପୁଲକୁ ହରାଇ ?
(୨) ବଦୁଳ ବଦୁର ହେଲେ ସରସୀଗରଭେ
ବହ୍ନିବକ ଶୀତଳତା କାଳ ଗ୍ରୀଷମରେ ?
ବଢ଼ିଲା କାରୁଣ୍ୟ-ନଦୀ ଉତ୍ତର ଉତ୍ତର
ବଦ୍ରବତପ୍ରାଣ ଅନ୍ଧ-ଦମ୍ପତି ଜୀବନ
ବମିଶ୍ର ହୋଇ, ସେ ସଙ୍ଗେ ତମସାଭିମୁଖେ
ବହିଲ, ଅନ୍ଧ ଅନ୍ଧୁଣୀ ଭସିଗଲେ ତହିଁ;
(୩) ବାଟ କଢ଼ାଇ ନିଅନ୍ତି ସାକେତ ସମ୍ରାଟ ।
(୪) ବଚ୍ନ-ଗମନେ ତମସା ତଟେ ହେଲେ ଯାଇ,
ବାହ୍ମଣୀ ଘାଟ ନିକଟେ ଅନ୍ଧଅନ୍ଧୁଣୀଙ୍କୁ
ବସାଇ, ମୃତ୍ପିଣ୍ଡ ଗୋଟି ଆଣି ନରମଣି
ବସ୍ପର୍ଶାଇ ଦେଇ ଅନ୍ଧ ତାପସ ଶ୍ରୀକରେ
ବୋଇଲେ, ହେ ମୁନିବର ! ଏହ୍ନ ତବ ପୁତ୍ର ।

(୫) ବୋକ ବହ୍ନି ପୁତ୍ର ମୁଖେ ବହ୍ଲାଳ-ବଳାପେ
ବକଲେ ସାପନ୍ତି ମୁନି, ଉଠ ଉଠ ଧନ,
(୬) ବସବସା ପାହିଲଣି ବ୍ରହ୍ମ ସଙ୍ଗେ ତୋର
ବଳମ୍ବ ହେଉଛି ଉଠ, ରେ ମହାନନ୍ଦ୍ରାଳୁ ।
ବାଲ୍ୟକାଳରୁ ତୋହର, ବନେ ହେଲେ ତୋତେ
ବୋଲ ନାହିଁ ଉଠ ବୋଲ ରେ ସଦ୍‌ଗୁଣ ସିନ୍ଧୁ !

(୧) ବନଲକ୍ଷ୍ମୀ—ରମ୍ଭା । (୨) ବଦୁଲ—ଜଳ । (୩) ସାକେତ ସମ୍ରାଟ୍—ଦଶରଥ । (୪) ବଚ୍ନ—କାତର । (୫) ବୋକ—କ୍ରନ୍ଦନ । (୬) ବସବସା—ରାତି ।

ବାରେ କହ ଆଜ କିପାଁ ବିଳାପେ ଉଠାଇ
ବିଶୀର୍ଣ୍ଣ କଣ୍ଠ, ବିଦୀର୍ଣ୍ଣ ହେଉଛି ହୃଦୟ ?
ବିହରନ୍ତ ଆଶ୍ରମର ଶୁକଶାରୀ ଦଳ
ବିଶ୍ରୁତ-ଅଭ୍ୟସ୍ତ ସ୍ୱନେ 'ସିନ୍ଧୁ, ସିନ୍ଧୁ' ବୋଲି
(୧) ବ୍ରାହ୍ମମୁହୂର୍ତ୍ତରେ ଆଉ ଡାକିବେ କାହାକୁ ?
ବିଷ୍ଣୁ ନାମାବଳୀ ତାଙ୍କୁ ଘୋଷାଇବ କିଏ
ବସାଇ କରପଲ୍ଲବେ ବାଲ୍ୟପୋଷା ପରି ?
(୨) ବାବୁ, ତୋତେ ଝୁରି ଝୁରି କାନ୍ଦିବେ କରଭେ
ବୁଲିବୁଲି ଲୋଡ଼ିଲୋଡ଼ି ନ ଦେଖିବେ ଯହୁଁ ;
ବଣ୍ୟ ପଲ୍ଲବରୁ ଆଣି ଅଚ୍ଛିନ୍ନ-ମାବାର
ବଢ଼ାଇ କେ ଦେବ ତାଙ୍କ ଦୋଳିତ ହସ୍ତରେ ?
(୩) ବାଲ ରସାଳ ପିୟାଳ ମାଧବୀ ମାଳତୀ
ବାଲ-ତରୁଲତା, ତୋର ଶ୍ରୀକର ରୋପିତ,
ବସନ୍ତକାଳ ଆଗମେ ଆଗତ ବତ୍ସରେ
ବତ୍ସ ! ବଉଳିବେ କିସ ? ମଉଳିବେ ସିନା !
ବିସାରଦଳ ଝୁରିବେ, ଏଣି ତମସାର
ବିକ୍ଷିପ୍ତ କରିଣ ଜଳ ନ ପାଇବେ ଯହୁଁ
ବିତୁରିତ ବନ୍ୟ ମୁଦ୍‌ଗ-ତଣ୍ଡୁଳ କଣିକା ।

ବିବେକୀ, ଶାନ୍ତ, ସୁଶୀଳ, ପିତୃମାତୃଭକ୍ତ,
ବିନୀତ, ସାଧୁ, ସଂଯମୀ, ସରଳ, ଦୟାଳୁ,
ବେଦଜ୍ଞ, ବିଜ୍ଞ, ବିଶ୍ୱାସୀ, ଈଶ୍ୱର-ପ୍ରେମିକ,
ବ୍ରହ୍ମଚାରୀ, ବ୍ରହ୍ମଜ୍ଞାନୀ, ଶିଷ୍ଟ, ମିଷ୍ଟଭାଷୀ,
ବୁଦ୍ଧ, ଶୁଦ୍ଧଚେତା, ବାଲ ବ୍ରହ୍ମର୍ଷିପ୍ରବର;
ବିଂଶତି ନାମରୁ କେଉଁ ନାମ ସମ୍ବୋଧନେ
ବାବା-ସମ୍ବୋଧନେ ପୁଣି ଉଠିବୁ ରେ ଧନ !
ବହିପଡ଼ୁ ସୁଧା, ହସି କହିଦିଅ ଥରେ ।

(୧) ବ୍ରାହ୍ମମୁହୂର୍ତ୍ତ—ଶେଷରାତ୍ରିର ଦୁଇଦଣ୍ଡ କାଳ । (୨) କରଭ—ହସ୍ତୀଶାବକ ।
(୩) ବାଲ—କୁରୁବେଲ ଗଛ ।

(୧) ବଗାହାର୍ଥେ ବନେ ବାବୁ ଏହି ତମସାକୁ
(୨) ବଥି କଢ଼ାଇ କଢ଼ାଇ ଆଣିଥିଲୁ ମୋତେ
ବ୍ରାହ୍ମ ମୁହୂର୍ତ୍ତରେ; ନତ୍ୟକର୍ମ ବଧି ସାର
(୩) ବ୍ରଜ-ଗର୍ଭୋଦ୍ଭୂତ ଏକ ଗ୍ରାବେ ହେଲ ଝୁଣ୍ଟି
(୪) ବାହୁଡ଼ିବା କାଳେ, ଆମ୍ଭ ଉଟଜ ନକଟେ
ବନସୂତ ହୋନ୍ତେ ରକ୍ତ ପଦ ତର୍ଜମାରୁ,
ବଲେକ ତୋ ଖୁରୁ-ଅଙ୍ଗ ଯାଇଥିଲ ଥର;
ବତ୍ସମଣି, ଆଜ କେହ୍ନେ ଶୋଣିତ-ଶଯ୍ୟାରେ
ବପ୍ଲାବତ-ରକ୍ତ-ଭୂମେ କରଛୁ ଶୟନ ?
ବଶାସ-ଦୁଃଖାନୁଭବ ସେ କାର୍ଯ୍ୟେ କାହିଁ
ବହି ଯାଇଛୁ କ ସବୁ କାଳ-କଲ୍ଲୋଳରେ ?
ବର୍ଣ୍ଣିବ କେତେ ରେ ସିନ୍ଧୁ, ତୋର ଗୁଣାବଳୀ
ବ୍ୟର୍ଥନାମା ନୋହୁ, ତୁହି ସଦ୍‌ଗୁଣର ସିନ୍ଧୁ ।
ବାଞ୍ଛିତ ଶିକ୍ଷାରେ ଯେଣୁ ହୋଇଛୁ ଉତ୍ତୀର୍ଣ୍ଣ
ବାଞ୍ଛା-ବରଦ ଈଶ୍ୱର ଭୁବନ-ସମ୍ରାଟ
ବମୁକ୍ତ ପଦରେ ରଖିବାକୁ ସ୍ୱର୍ଗଧାମେ
(୫) ବନ୍ଧମ-ଧାମରୁ ତୋତେ ନେଇଗଲେ ସିନା ।
ବଲକ୍ଷି ତତ୍ପରେ ମୁନ ନୃପତଙ୍କ ପ୍ରତ
ବୋଇଲେ, ହେ ଅବଧେଶ ! ତୁମ୍ଭ ଯୋଗେ ସିନା
ବନାଶ କାଳେ ମୋ ମୁଖ ନଦେଖିଲ ପୁତ୍ର;
ବୃଜନର ପ୍ରତଫଳ ଅନ୍ତିମ-ଜୀବନେ
ବଧିର ବଧାନେ ତୁମ୍ଭେ ଭୋଗିବ ନସ୍ତୁସ୍ତୁ ।
ବଳମ୍ବ ନକର ଶୀଘ୍ର କର ବରଚନ,
ବେନ ପ୍ରାଣୀ ପୁତ୍ର ସହ ପଶିବୁଁ ଅନଳେ;
(୬) ବୈଶ୍ରବ୍ଧକ-ଲୀଳା ଏବେ ସରଲ ଆମ୍ଭର ।
ବଷାଦତ-ଆନନ୍ଦତ ଅଭଶପ୍ତ-ନୃପ
ବରଚଲେ ଚିତାନଳ ଚନ୍ଦନ-ଇନ୍ଧନେ,

(୧) ବଗାହ—ସ୍ନାନ । (୨) ବଥି—ବାଟ । (୩) ବ୍ରଜ—ବାଟ । (୪) ଉଟଜ—ମୁନକୁଟୀର । (୫) ବନ୍ଧମ—ଶରୀରର ଅସ୍ଥିସବୁ ପରସ୍ପର ସଶ୍ଳିଷ୍ଟ ରହିବା ସୂତ୍ରବତ୍ ପଦାର୍ଥ । (୬) ବୈଶ୍ରମ୍ଭକ—ଶାସ୍ତ୍ରୀୟଳ ।

ବିଧିମତ ଅପସ୍ନାନ କରି ସମାପନ;
ବଣ୍କଲତାଭରେ ଅନ୍ଧ ତାପସ ତାପସୀ
ବାହୁରେ ବେଢ଼ାଇ ମୃତ ତନୟର ତନୁ
(୧) ବ୍ରଧ୍ନ-ସଦ୍‌ଗତି ବାସନା ପୋଷି ହୃଦୟରେ
ବେଦାଶୀର୍ବାଦ ପଠନେ ପଶିଲେ ଅନଳେ ।
ବିଳପିଲ୍ ବନଦେବୀ ମରମର ସ୍ୱନେ
ବୁଝି ପାରଛୁ ସେ ଯେଣୁ ଏ ସଂସାର 'ମର' ।
ବିଗତ ପାପର ଶବ ଘେନଣ ଚଞ୍ଚଲେ
ବାହୁଡ଼ିଲ୍ କ୍ଷୁବ୍ଧ ମନ ହୃଦ-ନିବାସକୁ ।
ବିବେକ-ନେତ୍ରରେ ଚହ୍ନି କୃତ ପାପ-ଛବି
ବର୍ଣ୍ଣିବି କିସ ? ଯା ହେଲ୍ ନୃପତି ହୃଦୟ
ବିବଶା ମୋ ଧୈର୍ଯ୍ୟ-ଶକ୍ତି ଲେଖମା-ଗୃଳନେ ।
ବିଳାପ-ବିହ୍ୱଳା ରାଣୀ-କୌଶଲ୍ୟା-ସୁମିତ୍ରା
(୨) ବିଭ୍ରୋଗିଣୀ ସହଚରୀ ଅନୁଚରୀଙ୍କର
ବିନତି ଖେଦ-ସାନ୍ତ୍ୱନା-ସମ୍ଭାଷଣେ ତେଣେ
ବାସଗୃହ କ୍ଷଣେ କ୍ଷଣେ ପଡ଼ୁଛୁ ଉଚ୍ଛୁଳି ।
ବାତ୍ସଣୀ ପରି କୌଶଲ୍ୟା ଉଠି ତରତରେ
ବ୍ୟଗ୍ରପଦେ ଅଭିଷେକ-ଦ୍ରବ୍ୟାଗାରେ ପଶି
ବିଲୋକି ରତ୍ନମୁକୁଟ, ରତ୍ନ-ପୁଷ୍ପହାର
ବିକଳ ଭାଷେ କହନ୍ତି ବିହ୍ୱଳା ମହିଷୀ—
ବ୍ରୀଡ଼ା ନାହିଁ ରହିଛ ଯା' ରେ ରତନଚୟ !
ବୁଡ଼ି ମର କିନା ଯାଇ ସରଯୂ-ଗର୍ଭରେ ।
ବଟଦୁଗ୍ଧ ରୁଦ୍ରାକ୍ଷର ସଙ୍ଗେ ମୁହିଁ ସରି,
ବର୍ଜିତ ହୁଅନ୍ତ କେହ୍ନେ ମୋ ରାମଚନ୍ଦ୍ରଙ୍କାରୁ ?
ବିପ୍ଲାବିତ ଅଶ୍ରୁ—ଦୃଷ୍ଟି ଫେରାଇ ସେ ଦିଗୁଁ
ବୋଇଲେ ଶତ ଧିକ୍‌କାରେ—'ଜଳି ମର୍ ଆରେ—
(୩) ବରାକ-ପୁଷ୍ପଜଡ଼ିତ-ପଚ୍ଛ ପରିଧେୟ !
ବେଷ୍ଟିତ ହେଲ୍ ଶ୍ରୀରାମ-କଟିରେ ଗୈରିକ-

(୧) ବ୍ରଧ୍ନ—ସୂର୍ଯ୍ୟ । (୨) ବିଭ୍ରୋଗିଣୀ—ରାଜାର ସାମାନ୍ୟ ସ୍ତ୍ରୀ ।
(୩) ବରାକ—ସୁବର୍ଣ୍ଣ ।

(୧) ବସନ; କ ଲୁଭ ତୋର ପସନ୍ଦପଣରେ ?
ବିବେଚନ ଯେ ସମୟେ ଗ୍ରୀଷମ ମଧ୍ୟାହ୍ନେ
ବରଷାଉଥିବେ ରଶ୍ମି ରସାପୃଷ୍ଠୋପରେ,
ବନାଗ୍ନି-ଶ୍ୱାସ ମିଶ୍ରିତ ଝଂଝା ପ୍ରଭଞ୍ଜନ
ବନବାସୀଙ୍କ ଜୀବନ କରୁଥିବ ଦଗ୍‌ଧ;
ବିଦ୍ୟୁଦ୍ଭାସିନୀ ପ୍ରାବୃଟ ତାମସୀ ଯେ କାଳେ
ବଜ୍ର-ବୃଷ୍ଟି ସଞ୍ଚାଳନେ (ଅସରା ଅସରା)
ବିପ୍ଲାବିତ କରିଦେବ ପର୍ଣ୍ଣବାସାନ୍ତର;
ବଣ୍ୟ ପ୍ରଦେଶେ ଯେ କାଳେ ଶୀତ-ନଶାନ୍ତରେ
(୨) ବ୍ୟୋମମୀରସିକ୍ତ-ତରୁ ପତରୁ ହିମାଶ୍ରୁ
ବିନ୍ଦୁବିନ୍ଦୁ ଝରୁଥିବ, ଶୀତ ସମୀରଣେ;
(୩) ବାଲଧି-ଆଲଟ, ଛତ୍ର, ସେହ୍ୱ ସେହ୍ୱକାଳେ
(୪) ବାସିତ-ଶୀତଳ, ଶୀତ, ଶୀତ-ମୃଗମଦ,
ବିଳାସଭବନ, ଲୀଳା-ଦୋଳାପିତ ପଙ୍ଖା
ବିଦ୍ୟୁଦ୍‌ବର୍ତ୍ତି-ଆଲୋକିତ ସ୍ଫଟିକ ସଉଧ,
(୫) ବନାତ-ଆପ୍ରପଦୀନ, ପଙ୍କ ଉପାଧାନ,
ବହଳ ଶାଟକଯୁକ୍ତ ରତନ ପଲ୍ୟଙ୍କ,
ବନବାସୀ ମୋ ଶ୍ରୀରାମ-ସ୍ମୃତି-ପ୍ରାଙ୍ଗଣରେ
ବିତରିବ ନାହିଁ ନୃତ୍ୟ—ମାଗୁଣି ଏତିକ ।
ବାହାରି ସେ ପୁରୁଁ ରାଣୀ ଅଶ୍ରୁ ପୋଛୁଥିଲେ
ବଇଦେହୀଙ୍କର ହର୍ଷବିଳାସ-ହରମ୍ୟେ
ବସିଲେ ପ୍ରବେଶି, ଶୋକ ନପାରି ସମ୍ଭାଳି ।
ବାଉଳୀ ପରିଏ ତହିଁ କରନ୍ତି ବିଳାପ
ବରବଧୂ-ମଧୁଗୁଣ ବାହୁନ ବାହୁନ ।

ବିଶଲ୍ୟପଣା ଗୋ, ଯେବେ ପୁଷ୍ପ ଉପବନେ
ବୁଲୁଥିଲୁ ସାନ୍ଧ୍ୟବାୟୁ ସେବନାଭିଳାଷେ,

(୧) ପସନ୍ଦ—ସୌନ୍ଦର୍ଯ୍ୟ । (୨) ବ୍ୟୋମନୀର—ଶିଶିର । (୩) ବାଲଧି—ଚାମର ।
(୪) ଶୀତଳ—ଚନ୍ଦନ । ଶୀତ—କର୍ପୂର । ମୃଗମଦ—କସ୍ତୁରୀ । (୫) ବନାତ—ଉର୍ଣ୍ଣ ନିର୍ମିତ ବସ୍ତ୍ରବିଶେଷ । ଆପ୍ରପଦୀନ—ମସ୍ତକରୁ ପାଦ ପର୍ଯ୍ୟନ୍ତ ଆଚ୍ଛାଦକ ବସ୍ତ୍ର ।

ବିସ୍ମୟସ୍ୟାବୃତା ଭଗିନୀମାନଙ୍କର ମେଳେ ।
ବିଭ୍ରମ ପ୍ରମାଦ ଦେଖି ସେହି ଅବସରେ
ବିଢ଼ିବା ପାଇଁ ତୋ ମନ, ଲତା ଅନ୍ତରାଳେ
ବସି ସର୍ବେ ଛଳେ କଲେ ଭୟ ପ୍ରଦର୍ଶନ ।
ବିସ୍ମୟ-ଭୟ-ଚକିତ-ଚିତ୍ତରେ ତୁ ପରା
ବୁଝି ନପାରି ଚଦନ୍ତ ଇତସ୍ତତଃ ଗୃହିଁ,
ବହିଲୁ ଗମନୋଦ୍ୟମ ପୁର-ଅଭିମୁଖେ ।
ବିବେକିନି, ପ୍ରତିପ୍ରେମ ମୂ ବୁଝି ନପାରି
ବିଶେ ଦେଖାଇଛୁ ସ୍ୱଚ୍ଛ ସଖିତ୍ୱ-ଗରିମା,
ବିଭୀଷିକା-ବିଭୂଷଣ ଶ୍ୱାପଦ-ଶଙ୍କୁଳ
ବନାନ୍ତରେ ଭୟ ତୋର ଲୁଚିଗଲୁ କାହିଁ ?
(୧) ବିଢ଼ଭିରେ କେବେ କେବେ ବସିଥିଲେ ତୁହି
(୨) ବିଢ଼ଶ୍ରିରେ ବିକମ୍ପିତ ହେଉଥାଏ ପାଦ,
ବନଜାକ୍ଷି, କଣ୍ଟକିତ ବୃଷଣ୍ଟୁ-ପଥେ
ବନ ପର୍ବତରେ କେମନ୍ତେ କରିବୁ ଭ୍ରମଣ ?
ବଇଦେହି, ଯେଉଁ କଇକେଇର ଚରଣେ
ବେଶି ଭକ୍ତି ଦେଖାଇଲୁ ଦିବସ ରଜନୀ,
ବିପିନ ବାସିନୀ ହେଲୁ ତାର ପ୍ରତିଦାନେ ।
ବୁଝିଲ ଗୋ ସୀତେ, ଏବେ ନିଯୁତିର ନୀତି
ବିଧି ନେଇ 'ଅତି' ପ୍ରତି କରଇ ଧର୍ଷଣ;
ବିନୟିନି, ଅତି ଧୀରା ହେଲୁ ଯେଣୁ ତୁହି
ବ୍ୟାପିଗଲା ପରି କାଠ ଅତିମିଷ୍ଟ ଫଳେ,
ବିହିଲା ଦାରୁଣ ବିଧି ତୋ ଭାଗ୍ୟେ ଦୁର୍ଦ୍ଦଶା ।
(୩) ବିଶ୍ଳିଷ୍ଟ ଥିଲା ମୋ ପ୍ରାଣ ଅତି ହର୍ଷେ କାଲି,
ବିଷାଦାଗ୍ନି ଆଜ ତାକୁ କରୁଛି ଦହନ ।
ବିଷଗର୍ଭ କୈକେୟୀର ସ୍ୱାର୍ଥ କୁଟିଳତା,
ବିହିତ ବା ଅତିଭକ୍ତି, କେ କହିବ ଏହା ?
ବିଧିର ବିଧାନେ ଅଛି କେ ସମାଲୋଚକ !

(୧) ବିଢ଼ଭି—ଅଟ୍ଟାଳିକା । (୨) ବିଢ଼ଶ୍ରି—ଅତିଶଯ୍ୟ ଭୟ । (୩) ବିଶ୍ଳିଷ୍ଟ—ସମ୍ପୃକ୍ତ ।

ବକଳା ବଧୂବତ୍ସଳା କଉଶଲ୍ୟାଙ୍କର
ବିଦଗ୍ଧ ହୃଦେ ସାନ୍ତ୍ୱନା-ଚନ୍ଦନ ଏକାଳେ
(୧) ବିଲେପିଲ୍ ତାମ୍ରଚୂଡ଼ ଋଷି ଭକ୍ତିଭରେ—
ବହ ଧୈର୍ଯ୍ୟ, ବହ ଧୈର୍ଯ୍ୟ, ଅୟି ମହାରାଣି !
(୨) ବରକ-ଦାସ-କୁଟିରେ ଉଠେ ବାରମ୍ବାର
(୩) ବଜ୍ରକଣ୍ଠ ସମର୍ଥିଲ୍ କୁକ୍‌କୁଟର କଥା ।
(୪) ବିକର୍ତ୍ତନ-ବଂଶାବଳୀ-କାର୍ତ୍ତନ-କୁସୁମ
(୫) ବନ୍ଦକେ ଛନ୍ଦ କବଭ୍‌-ସ୍ୱନ ଛନ୍ଦେ ଗୁନ୍ଥି
ବିଲମ୍ବିତ କରଦେଲେ ରାଜଲକ୍ଷ୍ମୀ ଗଳେ ।
ବଳକ୍ଷ-ପକ୍ଷ ଉଦ୍‌ଗ୍ରୀବ ରାଜହଂସଦଳ
(୬) ବାଜ ଝାଡ଼ ଝାଡ଼ ବାଜଶାଳାରୁ ବାହାର
(୭) ବର୍ତ୍ମେ ଖଣ୍ଡି ଉଡ଼ା ଦେଇ (ଧୀରଗତ ହେତୁ)
ବିବିଧ ପୁଷ୍ପିତାଲତା-ଆଲିଙ୍ଗିତ ବାଡ଼
ବିଚିତ୍ରିତ-ସୁନିର୍ମିତ ସ୍ଫଟିକ-ପାବଚ୍ଛ-
ବିଶୋଭିତ-ପଦ୍ମାକର ସ୍ୱଚ୍ଛ ନୀଳ ଜଳେ
ବୁଡ଼ ପ୍ରାତଃସ୍ନାନ କ୍ରିୟା କଲେ ସମାପନ;
(୮) ବହତନ୍ତେ କପାଁ ସେମାନେ ନୀତ ଦ୍ୱିଜ ଆଖ୍ୟା ?
(୯) ବିସିନର କର୍ଣ୍ଣପାଖେ ଭ୍ରମରୀ-ଦୂତିକା
ବୋଧିଣ ଗୁଞ୍ଜନ ଛଳେ କହିଲ୍ ଏମନ—
ବିଷାଦନ, ନଶା ଅନ୍ତେ ଆସିଲେଣି ଦେଖ
ବଲ୍ଲଭ ତୋହର ହସି; ସୁରଙ୍ଗ-ଅଧର,
ବନଜନ, ମନ ଚାହିଁ ଦଅ ପୁରସ୍କାର ।



(୧) ତାମ୍ରଚୂଡ଼—କୁକ୍‌କୁଡ଼ା । (୨) ବରକ—ଶବର । ଦାସ—କେଉଟ ।
(୩) ବଜ୍ରକଣ୍ଠ—ଡିଙ୍କି । (୪) ବିକର୍ତ୍ତନ—ସୂର୍ଯ୍ୟ । (୫) ବନ୍ଦକ—ସ୍ତବ ।
(୬) ବାଜ—ପର, ପକ୍ଷୀ । (୭) ବର୍ତ୍ମ—ପଥ । (୮) ଦ୍ୱିଜ—ପକ୍ଷୀ, ବ୍ରାହ୍ମଣ ।
(୯) ବିସିନୀ—ପଦ୍ମିନୀ ।

# ଉତ୍କଳ-କବିତା

## ପ୍ରାର୍ଥନା

( ରାଗ—ତୋଡ଼ିପରଜ )

ପ୍ରେମମୟ, ତୁମ୍ଭେ ମୋ ପ୍ରେମସାଗର;
ତବ ପ୍ରେମାସବ      କ୍ଷଣେ ଯେଣୁ ଭବ-
ସାଗରର ସୁଧାଗର । ଘୋଷା ।

ତୁମ୍ଭେ ସିନା ଅନୁ-      ମିତ ହେ ଅତନୁ
ବିଶ୍ୱମୋହନ ସୁନ୍ଦର,
ଏ' ତ ଅନୁଭବ୍ୟ      ଯେଉଁ ନିତ୍ୟ ନବ୍ୟ
ଦେଖାଅ ଲୀଳା-ସୁନ୍ଦର ।

ତୁମ ପ୍ରେମେ ପାଗ୍‌ଲ      ଲଗିଛି କେ' ମାଳା
ଗଡ଼ାଏ ଥରକୁଥର,
ପ୍ରେମେ ହୋଇ ହେଲ      କେହ୍ନି ଅବା କୋଳ
କରୁଛି କାଠ ପଥର ।

ତବ ପଦଧୂଳି      ମାଖେ ତା' ମଉଳି
ସୁଖେ ଯେ' ପ୍ରେମ-ଶୀକର,
ପ୍ରେମର ପୂରୁଣା      ଧୂଳିଠାରୁ ଊଣା
ମଣେ ରବି ନିଶାକର ।

ଦେଇଛ ରସନା      ହୃଦର ବାସନା
ଗାଇବାକୁ ନିରନ୍ତର,

ଆସିଛି ମୁଁ ଗାଇ ଆଶିବ କପାଇଁ
(୧) ଛଳନା-ଗଳ-ଯନ୍ତ୍ରର ?

ସାଗରେ ଶଫରୀ ପଶିଏ ହେ ହରି,
ଖେଳୁଛି ପ୍ରେମେ ତୁମ୍ଭର,
ତୁମ୍ଭଙ୍କୁ କରୁପେ ମୋ ହୃଦୟ-କୂପେ
ଖେଳାଇବ ବିଶ୍ୱମ୍ଭର ?

ନାମ ଅରଚନା- ସାମଗ୍ରୀ ରଚନା
ସବୁ ତ' ତୁମ୍ଭ ନଜର,
ବିଶ୍ୱାସ ତେବେ ବି' ପ୍ରେମେ ମୁଁ ଯା' ଦେବ
ଟାଳିବ ଲୋଭ-ନଜର ।

ଜାଣିବ କେମନ୍ତେ ଆଶିଦେଲ ମତେ
କହିଁ "ମୁଁ କାର", "ମୋକାର" ?
ମାଗୁ ଛି ହେ ଦେବ, ଯେ ଧନ ତା' ନେବ
ଏ କଣ୍ଠେ ଦେବ "ଓଁ କାର" ।

---

**କଣାଣ** ※

( ରାଗ—କାମୋଦୀ )

କମ୍ବୁ-ରଥାଙ୍ଗକର ! ଖଣ୍ଡ-ଧାତୃଶ୍ରୀଙ୍କର
ଗର୍ବାଭିମାନଦମ୍ଭହାର !
ଘନ ଅଘନାଶନ ! ଉରଗାରି-ଆସନ !
ଚରଣତଳେ ଏ ମୁହାର ହେ;
ଛପାଧନ !
ଜମ୍ବୁ-ଦ୍ୱୀପ ଅଧିପତି,
ଝଂଝଟ ଅଗତିର ଗତି;

(୧) ଗଳଯନ୍ତ୍ର—ହ୍ୱାଗୋନିଂସ୍ମ୍ ।

※ ଲେଖକଙ୍କଦ୍ୱାର ପ୍ରଣୀତ ଅପ୍ରକାଶିତ 'ସତୀ ସାବିତ୍ରୀ' ଗୀତନାଟ୍ୟାନ୍ତର୍ଗତ ··'ବାନଙ୍କର ଗାନବିଶେଷ । ଅ.ବଶ୍ୟକତା ବୁଝିକୁ ··· [illegible]

ନିର୍ଦ୍ଦୋଷ ତ' ମହିମା, ଟପି ଗଲେହେଁ ସୀମା
ଠିକ ନ ପାରେ ମୋ ବିପତ୍ତି ହେ !

ଝରିବି କିପାଁ ଦୁଃଖେ ? ଝଳିବି କିପାଁ ସୁଖେ ?
ଅବସ୍ଥା ତବ ଇଚ୍ଛାଧୀନ,
ତରିବା ମୋ ସାହସ ଅଯୁ ହେଉ ମାନସ
ଦଦରା ନାବେ ନୋହି ଖିନ୍ନ ହେ;
ଧର୍ମରୂପ !
ନରଜନ୍ମ ତ ଅଛି ଲଭି,
ପଡ଼ୁ ବି' ଭାଗ୍ୟ-ମୁଦ୍ଗରେ ପବି;
ଫଣୀ ମସ୍ତକେ ଭେକ ବସାଏ ତବ ଟେକ
ଭକତ ପାରେ ଅନୁଭବି ହେ !

ମଲେ ବି' ତୁମ୍ଭ କୋଳେ ଯମ ଦେଖିବ ଡୋଳେ
(୧) ରହିବି ଶାଶ୍ୱତ ତ୍ରିପୁରେ,
ଲଭିଲେ ହେ ସହସ୍ର- ବର୍ଷ ଆୟୁ ଯା' ଯଶଃ—
(୨) ଶରୀର ବନସ୍ଥ ରିପୁରେ ହେ;
(୩) ଷଡ଼ବିନ୍ଦୁ !
ସନ୍ତତ ସେହି ସିନା ମୃତ,
ହରାଇ ସଦ୍ଧ୍ୟାନାମୃତ;
ଯାରୁ କୀର୍ତ୍ତିଶୌମୃତ ସନ୍ଧ୍ୟରେ ଅ-ବିକୃତ
ରହୁ ଏ ଶୋଠ କବି କୃତ ହେ ।

---

## ନିବେଦନ

ବହି ପାରିବାର ବୋଝ ଦିଅ ପ୍ରଭୋ !
ସହି ପାରିବାର ଦୁଃଖ ଦିଅ,
ଦୁଃଖୀ ଭୋଗୀ ପାଦେ ପରଷିବା ପାଇଁ
ମୋ ଭାଗ୍ୟ-ଭାଗରୁ ସୁଖ ନିଅ ! (ଘୋଷା)

---

(୧) ଶାଶ୍ୱତ ତ୍ରିପୁର—ସତ୍ୟମୟପୁର, ଚୈତନ୍ୟମୟପୁର ଓ ଆନନ୍ଦମୟପୁର ।
(୨) ରିପୁ—କାମକ୍ରୋଧଲୋଭମୋହାଦି ଷଡ଼ରିପୁ । (୩) ଷଡ଼ବିନ୍ଦୁ—ପରମାତ୍ମା ।

ତୁମେ ପର ଭବେ ଭକ୍ତଭାବଗ୍ରାହୀ,
ଭକ୍ତ ନୁହେଁ; ଭାବ-ବିଭବ ମୋ କାହିଁ ?
ପରଦୁଃଖେ ଲୁହ- ଧାର ବୁହାଇ ମୋ'
ସାର ଜୀବନେ; ସେ ଧାର ପିଅ । ୧ ।

ତୁମ ଅର୍ଚ୍ଚନାରେ ଲଗେ ପର ଫୁଲ,
ହୋଇ ପାରିବ କି ସେ ଫୁଲର ତୁଲ ?
କୁହୁଳି ତରଳ ଜଳିଥିବା ଭଳି
ଜୀବନ ମୋ ହେଉ ଧୂପ-ଘିଅ । ୨ ।

---

## ଆହ୍ଲାଦନ

(ଭଜ ମନ ବ୍ରଜବନ ବିଜରାଜଙ୍କୁ ହେ—ବୃତ୍ତ)

ମାନସ, ତୁ' ପାନ କର ଆନନ୍ଦ-ସୁଧା ରେ,
ଆନନ ତୋ' ମ୍ଳାନ ନୋହୁ ଦାନବୀ-କ୍ଷୁଧାରେ । ଘୋଷା ।

ମାନ ଅପମାନ ତେଜ,
ସାନ ବଡ଼ ସମ ହେଜ;
ମାନବ ଗୁମାନ-ଅପିଧାନ-ବସୁଧାରେ । ୧ ।

ମାନ ବୋଲ ମୂଢ଼ ମନ,
ଦାନ କର ପ୍ରେମ-ଧନ;
ସ୍ନାନ ହେଉ ତାନ-ଲୟ-ଗାନ-ରସ-ଧାରେ । ୨ ।

ଜ୍ଞାନ ହରୁ ଦୁଃଖ ଶୋକ,
ଧ୍ୟାନ ଫିଟରୁ ଆଲୋକ;
ବାନର ସମାନ ନୁହ; ଆନ ଶରଧାରେ । ୩ ।

# ମାତୃପୂଜା

( ରାଗ—ରାମକେରୀ )

ଜୟ ସରସ୍ୱତୀ ଭାରତୀ—
ଦୟାବତୀ ଜନନୀ,
ରସ-ପରିପ୍ଳୁତ-ଚରଣା
ଯଶ-ପ୍ରଭ-ଆନନ !
ଶ୍ୱେତ ପଦ୍ମାସନା ରସନା-
ବିଳାସିନୀ ତୁ ଗୀତା,
ଆର୍ଥିକ ସାଧକ ସେବିତା
ଦେବୀ, କାନ୍ତି-ଭୂଷିତା ।
ସାରା ଭୂମଣ୍ଡଳ ଆଲୋକ-
ପ୍ରଦ ଧର୍ମେପଦ-
କଳା ଲଭିବେ ତୋ ଅକ୍ଷୟ
ରତ୍ନ କୋଷ-ସମ୍ପଦ ।
ଚତୁର୍ବର୍ଗ ଫଳ ଶ୍ରୀପଦେ
ରଖି ସ୍ୱର୍ଗାନ୍ତି ପୁରି
ବୋଲାଉଛୁ ମର୍ତ୍ତ୍ୟବୈକୁଣ୍ଠ
ସିନା ତୋ ଦିବ୍ୟ ପୁରୀ !
ବଢ଼ାଇବାକୁ ତୋ ମହିମା
ଦେଇ ସୁଧା ଗର୍ବର,
ଜଡ଼ରୂପେ ତୋତେ ଆଶ୍ରିଲେ
ଦେବଦେବୀ ସ୍ୱର୍ଗର ।
ନରଙ୍କି ଶରଧା ବିଶେଷ
ବଇକୁଣ୍ଠ ଉପରେ,
ତୋ ପୁରୀ ମଣ୍ଡିଲେ ବିଶ୍ୱେଶ
ଦାରୁବ୍ରହ୍ମ ରୂପରେ ।
ଚିଲିକାବିହାରୀ ମରାଳ
ମୁଖୁଁ ଶୁଣି ଖବର,
ଏକାମ୍ର କାନନେ ଅଷ୍ଟାଙ୍ଗ
ହେଲେ ଉମାଙ୍କ ବର ।

ବନ୍ଦନାପୂ କଲୁ ସଭିଙ୍କି
ଫଳ ପୁଷ୍ପ ଚନ୍ଦନେ,
ସଙ୍ଗୀତର କର ସପତ-
ସ୍ୱର ବୀଣାବାଦନେ ।
ଭଞ୍ଜ, ଧନକୃଷ୍ଣ, ସାମନ୍ତ
ଆଦି କୃଷ୍ଣ ନନ୍ଦନ,
ଆରମ୍ଭିଲେ ଶୁଦ୍ଧ ରାଗରେ
ତୋର ସ୍ତୁତି-ବନ୍ଦନ ।
ନବୀନ ଭାବୁକ ସ୍ତାବକ-
ରୂପେ କବି-ସବିତା,
ଗାଇଲେ "ସଙ୍ଗୀତ କଳପ-
ଲତା" ଛବି କବିତା ।
ବ୍ୟାସ କବି ତୋର ଫକୀର
ହର୍ଷେ ଫିଟାଇ ଝୁଲି,
ଭକ୍ତିଭରେ ଦେଲେ ଅଜାଡ଼ି
'ପୂଜାଫୁଲ'ରେ 'ଧୂଳି' ।
ପଦ୍ମାବାସୀ ବୋଲି ମେହେର
ତୋର ଶରଧା ଚହ୍ନି,
'ଅର୍ଘ୍ୟଥାଳୀ' ସଜ୍ଜ ଅର୍ପିଲେ
ତରପୂଷ୍ଠା 'ପଦ୍ମିନୀ' ।
ନାରାଜନା ରୂପେ 'ବିଜୁଳି'
ଅର୍ଦ୍ଧମଣ୍ଡଳେ ଖେଳି,
'ଇନ୍ଦ୍ରଧନୁ' ଭୁଲେ ରଚିଲା
ଶୋକ-ବିବାଦ କେଳି ।
ଚଉଦିଗେ ଜ୍ଞାନ-ଆଲୋକ
ଦାନ କରି ତୋ 'ପ୍ରଜ୍ଞା',
ହସାଇଲା ତୋତେ, ବସାଇ
ପଦସେବକ ସଙ୍ଘ ।
ଗଢିଲା ତୋ ପୀଠ ବାଜିଲା
'ହ୍ୱଚୈତିଣୀ'-ମନ୍ତ୍ର,

ଜମ୍ବୁ କଳାବନ୍ତ ଜନନୀ
ବୋଲି ପଡ଼ିଲା ହୁରି ।
ଗାଇଲେ ତୋ କଳା-ସଙ୍ଗୀତ
ସ୍ନେହସ୍ନିଗ୍ଧ ପୁତ୍ର-ପୁତ୍ରିକା,
ବାଇଲେ ନୌଦିଗେ ପ୍ରତିଭା-
ବୀଣା ପଦପଦ୍ମିକା ।
ମରୁଭୂମେ ଢାଳେ ଝରଣା
ତୋର କରୁଣା-ବୃଷ୍ଟି,
ଝଲକେ ପୁଲକେ ଗଲା ମୁଁ
ଦେବି, ଦେଲୁ କି ଦୃଷ୍ଟି ?
ପୁଲକିତ ପ୍ରାଣେ ଗାଇବା
ଇଚ୍ଛେ ତୋ ଗୁଣ ଯଶ,
ପୂଜା ସମ୍ଭାରର ଅଭାବେ
ଖଣ୍ଟୁନାହିଁ ସାହସ ।
ରତ୍ନାକର ବିଶ୍ୱପାବନ-
ତୀର୍ଥ ଦେବି ଅଙ୍କରେ,
ସଙ୍ଗୀତ-ଲହରେ ଶ୍ରୀପଦ
ତୋର ଧଉତ କରେ ।
ହୃଦେ ଗୁଣରତ୍ନ, ଜୀବନେ
ନାହିଁ ସେ ଗମ୍ଭୀରତା,
କି ଦମ୍ଭେ ଗାଇବି ତୋସୁଧ-
ତଟେ ତୋ ସୁନ୍ଦରତା !
ଚନ୍ଦ୍ରା-କେତେ ଗୃହିଁ କୋଣାର୍କ-
ଶିଳ୍ପକଳା-ଗୃହୁଣି,
ମହେନ୍ଦ୍ରଶିଖରୁ ବିସ୍ମିତ
ଚାହିଁ ଆସେ ଉତ୍ତୁରି ।
ସେ ସଙ୍ଗେ ଜନାଇଁ ସାହିତ୍ୟ-
ଶିଳ୍ପୀ ଭଞ୍ଜ-କବିତା—
ଶ୍ଳେଷ-ଅନୁପ୍ରାସ-ଯମକ;
ଧ୍ୱନ୍ୟେ ଅନୁଭବିତା ।

ତାଳୀ-ଜମ୍ବୁ-ଝାଉ ଚଲକା
କାଳୀଜୟୀ-ଦର୍ପଣ,
ହଂସ ନନାଦନ୍ତ ଜୀବନେ
କରେ ତୋର ତର୍ପଣ ।
ଆଗ୍ରହ ହେଲେହେଁ ପାରିବ
ଗ୍ରହି ଶଲକା ଦୀକ୍ଷା,
କାହିଁ ସେ ଜୀବନ, କାହିଁ ସେ
ସ୍ୱାସ୍ଥ୍ୟ, ଶକତି, ଶିକ୍ଷା ?
ଶତ ଶତ ବାଧା ସଙ୍କଟ
ଏଡ଼ି କଳ-ଜାହ୍ନବୀ,
ତୋ ସେବାରେ ଖଟି ପାଇଛି
'ମହାନଦୀ' ପଦବୀ ।
'କ୍ଷୀର' 'ଅମୃତ' ମୋ ହେଲେହେଁ
ମହାନଦୀର ଜଳ ।
ପାରନ୍ତି କାହିଁ ମୋ ଲଙ୍ଘିବା
ବାଧା-ସଙ୍କଟ ବଳ ?
ତଥାପି ଚପଳ ମାନସ
ଧାଏଁ ନିଜ ସ୍ୱଭାବେ,
ରଖିବାକୁ ମୋତେ ତୋ ପୂଜା-
ପୀଠେ ସେବକ ଭାବେ ।
ଅନୁଶାସନ, ଏ କରୁଣା
କେଉଁ ଅନ୍ତରାଳରେ ?
ଈପ୍ସିତ ପୂଜା ମୁଁ ଶିଖି ତ
ନାହିଁ ଗୁରୁବାସରେ ।
ଏତିକି ଜାଣେ ଗୋ ଜନନି,
ସଦା ମନ ନିର୍ମଳ—
ଥାଏ ମାତୃପଦେ ତାହା ହିଁ
ମାତୃପୂଜା-ସମ୍ବଳ ।

# କବିତାଦେବୀ

(ନଷ୍ଟବାଣୀ)

(୧) ମୁଗ୍ଧପ୍ରାଣ-ସତ୍ୟଶୁଦ୍ଧ ସଂବେଦନା
କରୁଣାରୂପିଣୀ ବାଗ୍‌ଦେବୀନନ୍ଦନା;
ଭାବପ୍ରାଣା ଗୁଣକଳା ଜ୍ୟୋତିର୍ମୂର୍ତ୍ତି,
କବିତା ଦେବି, ତୁ ସତ୍ତ୍ୱ ରସବର୍ତ୍ତି !

ମଧୁମୟୀ ମୈତ୍ରୀ-ଶାନ୍ତି ବିଧାୟିନୀ
ଛନ୍ଦ-କୋମଳାଙ୍ଗୀ, ଆନନ୍ଦଦାୟିନୀ;
ବିବୁଧ-ମାନସ-ମୋହିନୀ ତୋ ଲୀଳା
ଖଳତ୍ୱ-ଜଡ଼ତ୍ୱ-ଦାହିନୀ ସୁଶୀଳା ।

ସହସ୍ରନୟନା ସହସ୍ରଚରଣା
ବିବିଧ ପଥଗା ବିବିଧ ବରଣା;
ତୁହି ଲକ୍ଷ୍ମୀ ତୁହି ଦୁର୍ଗା ଶସ୍ତ୍ରଭୁଜା
ତୋହର ପଦାର୍ଥେ ହୁଏ ତୋର ପୂଜା ।

କିମ୍ବଦନ୍ତୀ ଆଖ୍ୟାୟିକା ଇତିହାସ
(୨) ପ୍ରଳାପ ବିଳାପ ଗଳ୍ପ ଉପନ୍ୟାସ,
ଭିନ୍ନ ରୂପ ବହେ ଲଭି ତୋର ଧ୍ୱନି
ପ୍ରତିଭାଶାଳିନୀ ତୁ ସୃଷ୍ଟି-ପାବନୀ ।

ତୋର ଶ୍ରୀଚରଣ ପରଶେ ପାଷାଣ
ସୁବର୍ଣ୍ଣ ପାଲଟି ପାଏ ଦିବ୍ୟ ପ୍ରାଣ;
ନିର୍ଜୀବ ପ୍ରକୃତି ଲଭି ସଜୀବତା
ମାନବକୁ ଦିଏ ବାସ୍ତବ ସଭ୍ୟତା ।

---

(୧) ମୁଗ୍ଧପ୍ରାଣ—ଭାବପ୍ରବଣ ନିସର୍ଗ କବି ।

(୨) ପ୍ରଳାପ—ଯେଉଁ ରଚନାରେ ନିତାନ୍ତ ଅସମ୍ଭବ ଅଲୌକିକ ବିଷୟ ବର୍ଣ୍ଣିତ ହୋଇଥାଏ ।

ଫୋଟିବାକୁ ଆତ୍ମଦୋଷ ଅନ୍ଧାଗାର
ସମାଜକୁ ଦେଇ ବିବେକ ବିଚାର,
ସମାଜର ତୁହି ଜୀବନ ପଞ୍ଜିକା
ଶକ୍ତି-ସଞ୍ଚାରିଣୀ ହୃଦୟ-ରଞ୍ଜିକା ।

ନାନା ଘଟନାର ଶସ୍ତ ଉପାଦାନେ
ଲୀଳାମୟଙ୍କର ଲୀଳା ମହୋଦ୍ୟାନେ,
ପୁଷ୍ପରୂପେ କେତେ ଫୁଟିଉଠେ ସୃଷ୍ଟି
ବସୁଧାରେ ତହିଁ ସୁଧା କରୁ ବୃଷ୍ଟି ।

ତୋ ରସ ପୀୟୂଷ ପୂରଣେ ସେ ଫୁଲ
ଭବେ ହୋଇଥାଏ ଅମୂଲ୍ୟ ଅତୁଲ;
କାଳକୀଟ ତାକୁ ପାରେ ନାହିଁ ଛୁଇଁ
କାଳଜୟୀ ରୂପେ ଥିବା ଯାଏ ଭୁଇଁ ।

ମନୁଭୂମେ ଝର ରମ୍ୟ ଉପବନ,
ଉପବନେ ଫଳ ବାସନ୍ତୀ ସୁମନ,
ସୁମନେ ସୁଗନ୍ଧ ମକରନ୍ଦ ଭରା
ଜଗତେ ତୋ ଯଶ ଗୁଣ ତହୁଁ ବନ୍ଦ ।

କା' ସଙ୍ଗେ ରଖିବ ଲେଖି ତୋ ତୁଳନା
କଳପନା କରି ନପାରେ କଳନା;
ଜଗତେ ଏ ଭଳି ଅଛି କାହା ଶକ୍ତି,
ଏକାଧାରେ ଦେବ ଶାନ୍ତ ପ୍ରୀତି ଭକ୍ତି ?

(୧) କେଉଁ ରୂପଶ୍ରୀର ରୂପ ଅଳଂକାର
ଚିରନ୍ତନ ଶତ୍ରେ ଦିଏ ଚମତ୍କାର ?
କେଉଁ ରସବତୀ ଗତି ଲୀଳା ରସ
ଶିଶୁ-ପଶୁ-ପ୍ରାଣ କରିପାରେ ବଶ ?

(୧) ରୂପଶ୍ରୀ—ରୂପଲକ୍ଷ୍ମୀ ।

ଯମକାନୁପ୍ରାସ ତୋ ମଞ୍ଜୁ କଂକଣ-
ନିକ୍ୱଣ ପ୍ରବୃତ୍ତିରେ ସୁଧାକଣ କି'ଣ ?
ଉପମା ରୂପକ ତରଳ ପଦକ
କଳପକ-ହୃଦ ମୁଦ ସଂପାଦକ ।

ଉପଧା-ନୂପୁର ପାଦେ ରୁଣୁଝୁଣୁ
ସୁବର୍ଣ୍ଣ ଝୁଣ୍ଟିଆ ନାଦେ ଝୁଣୁଝୁଣୁ ।
ଯତି ସମସ୍ୱର ବାଜେଣୀ କଂକଣି
କଣି କଣି ସ୍ୱନେ ନିଏ ମନ କିଣି ।

ସଂଯତ ଚନ୍ଦନ ତୋ ସିନ୍ଦୂର ଟିକା
(୧) ସଯତ୍ନତା ରକ୍ଷା ରତ୍ନ ଲଲାଟିକା
ଶ୍ଳେଷାଞ୍ଜନ ନବ୍ୟଖଣ୍ଡ-ପାଉଡ଼ର
ବର୍ଣ୍ଣାଧିକ୍ୟ ଦୋଷ ଝୋପି ତୋ ମୁଣ୍ଡର ।

ଭାଷା-ପାଟଶାଢ଼ୀ ପିନ୍ଧି ସୁଶଇଳୀ-
ଭଙ୍ଗୀ କାଢ଼ି ଗତି କଲେ ତୁ ଛଇଳି,
କଇରବ ଫୁଟେ ଶଇଳ ଉରସେ
ମୃତ ଜାଗିଉଠେ ଅମୃତ ବରଷେ ।

ଶର ରଙ୍ଗ ରଖେ ତୋ ପଦ ଅଳତା
ଅଳତା ନୁହେ ସେ ସ୍ଥିର ବିଦ୍ୟୁଲ୍ଲତା;
ଯହିଁ ପଡ଼େ ସେହି ବିଦ୍ୟୁଲ୍ଲତା ଜ୍ୟୋତି
ସୃଷ୍ଟିକରେ ତହିଁ ହୀରା ମାଳା ମୋତି ।

ଚକ୍ଷୁ-ଦର୍ଶୀ କବି ଶନି ତୋର ଛବି
ଯମଠାରୁ ଆଣେ ଅମର ପଦବୀ;
ସରଗ ସୁଷମା ତଳକୁ ଖସାଇ
ମରତକୁ ଦିଏ ସରଗେ ବସାଇ ।

(୧) ସଯତ୍ନତା—ନିୟମ ।

କବି-କାମଧେନୁ ଦେବୀ ତୁ କବିତା
ଅଭୟଦାୟିନୀ ପୟସ୍ୱିନୀ ଗୀତା;
ଗୁଣ-ଦୁଗ୍‌ଧପାୟୀ ଯେ ତୋର ଭକତ
ଅମେଧ ତା ମୁଖେ ତୋ ଦୋଷ-ରକତ ।

ଅଶେଷ ଜ୍ଞାନ ତୋ ଗର୍ଭେ ଅଛି ଭରି
ରତ୍ନାକର ଗର୍ଭେ ରତ୍ନରାଜ ପରି;
ପୁରାଣ ବର୍ଣ୍ଣିତ ସାଗର ମନ୍ଥନ
ଆନ କିଛି ନୁହେଁ ତୋହର ଚିନ୍ତନ ।

ଗୁଣୀ-ଦୋଷଦର୍ଶୀ ଦେବାସୁର ଦଳ
ଲଭିଲେ ତୋ ଗର୍ଭୁଁ ଅମୃତ ଗରଳ;
ଗୁଣ ଦୋଷେ ସମଦୃଷ୍ଟି ରଖି ଶୂଳୀ
ହେଲେ ବିଷକଣ୍ଠ ସୁଧାଂଶୁମଉଳି ।

ସଦାନନ୍ଦ ସମ ସମଦର୍ଶୀ କବି
ସୁଖେ ଦୁଃଖେ ହୁଏ ସମ ଅନୁଭବୀ;
ଶ୍ମଶାନ କୈଳାସ ତା' ନେତ୍ରେ ସମାନ
ଫଣୀକି କରେ ସେ ମଣିହାର ଜ୍ଞାନ ।

ସୁବାସ ଚନ୍ଦନ ଭସ୍ମ ବିଲେପନେ
ବିଭୂତିର ସ୍ପୃହା ନାହିଁ ତା' ଲପନେ;
ସେହି ଦେବକବି ତୋ ଗୁଣ ମହିମା
ବର୍ଣ୍ଣନେ ଖଟାଇ ପାରେ ଶକ୍ତି ସୀମା ।

ତା ତନ୍ଦ୍ରୀଦୃଷ୍ଟିରେ ତୁହି ସୁରନଦୀ
ବିଷ୍ଣୁପଦ ନିର୍ଝରିଣୀ ବିଷ୍ଣୁପଦୀ;
ତ୍ରିଲୋକ-ପାବନୀ ଗଦ୍‌ଗଦ-ନାଦିନୀ
ଶାନ୍ତି ପ୍ରଦାୟିନୀ ପ୍ରାଣ ଆହ୍ଲାଦିନୀ ।

ଆଦି ଶାନ୍ତ ହାସ୍ୟ-କରୁଣ-ତରଙ୍ଗା
ସନ୍ତମୁଖମୟୀ ଧବଳାଙ୍ଗୀ ଗଙ୍ଗା,

ତେଣୁ ସିନା ଗଙ୍ଗାଧର ମସ୍ତକରୁ
ସୁଧାକର-ସୁଧା-କର ଛଳେ ଝରୁ ।

ଦେବ, ତୋ ପଯୂରେ ଢାଳୁଛି ଜୀବନ
ଏ ଜୀବନ-ଧାରା କର ମା ପ୍ଲାବନ;
ହସାଇ ଖସାଇ ନିଅ ସରାଗରେ
ମିଶାଇ ଦିଅ ତୋ ଅମୃତସାଗରେ ।

ଅମୃତ ପାଲଟୁ ମୋ ଜୀବନ ରସ
ସେ ରସ-ତରଙ୍ଗେ ଦୋଳୁ ଆତ୍ମା-ହଂସ;
ମୁକ୍ତ କ୍ରୀଡ଼ା ହଂସ କରୁ ମୁକ୍ତଗତି
ତା' ହିଁ ମୋ ପରମାନନ୍ଦଦା ମୁକତି ।

---

## କୃଷ୍ଣ-କିଶୋରୀ

( ରାଗ—ପୂରବୀ )

କାନ୍ଦ କାହିଁକି ଗୋ ଚନ୍ଦମୁହିଁ,
କଣ୍ଠ ଦେଇ ଯାଉଛି ତ' ମୁହିଁ;
ଖେଦ-ଅଶ୍ରୁ-ନେତ୍ରେ ଖୋଜୁଥିବ କେତେ
ଖୋଲି ନେଇଯାଅ ନେତ୍ର ଦୁଇ
ଆହେ ଗଣ୍ଠିଧନ !
ଘନ ସୁନ୍ଦର ତୁମେ ତ' ମୋ ଜୀବନ,
ଜଣା କର ଯାଉଛ ତ' ଦାସୀ ମନ । ୧ ।

ବୃନ୍ଦାବନଠାରୁ ନୁହେ ବେଶି
ଚାହିଁଥିବ ପଥ ଚାରୁକେଶୀ,
ଛଇଲ କିଶୋର ଛନ୍ଦା ପ୍ରୀତି ଡୋର
ଛିଣ୍ଡାଇ ଦେବ କି ଦୂଷ୍ଟ ଫେଡି ?
ଆହେ ଜବାଧର,
ଝରୁଥିବ ଲୁହଧାର ଦରଦର,
ମାପ ଚାହୁଁକୁ ଅନାଇ ଥରଥର । ୨ ।

